## ପରମ ପୁରୁଷ

# ଶ୍ରୀଶ୍ରୀ ରାମକୃଷ୍ଣ ପରମହଂସ



ରାଜ୍ୟ ଜନଶିକ୍ଷା ସାଧନା କେନ୍ଦ୍ର, ଓଡ଼ିଶା
ଭୁବନେଶ୍ୱର

# ପରମ ପୁରୁଷ
# ଶ୍ରୀଶ୍ରୀ ରାମକୃଷ୍ଣ ପରମହଂସ



ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା
ଭୁବନେଶ୍ୱର

# ପରମ ପୁରୁଷ ଶ୍ରୀଶ୍ରୀ ରାମକୃଷ୍ଣ ପରମହଂସ

ଲେଖିକା - ଡକ୍ଟର ମନସା ଦାସ

ପ୍ରଥମ ପ୍ରକାଶ - ୨୦୦୨

ପ୍ରକାଶକ - ଶ୍ରୀ ଭୁବନାନନ୍ଦ ତ୍ରିପାଠୀ
ନିର୍ଦ୍ଦେଶକ, ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର
ଓଡ଼ିଶା, ଜନଶିକ୍ଷା ଭବନ, ୟୁନିଟ୍-୫
ଭୁବନେଶ୍ୱର - ୭୫୧୦୦୧

ପ୍ରଚ୍ଛଦ ଓ ଅଙ୍ଗସଜ୍ଜା - ଶ୍ରୀ ବ୍ରଜକିଶୋର ଜେନା

ପ୍ରକାଶନ ସଂଖ୍ୟା - ଏସ୍. ଆର୍. ସି. ୩୫୭-୩ / ୨୦୦୨ - ୦୩

ମୁଦ୍ରଣ ସଂଖ୍ୟା - ୧୦୦୦

ମୁଦ୍ରଣ - ଜଗନ୍ନାଥ ପ୍ରୋସେସ୍ ପ୍ରା: ଲି:, କଟକ-୨

ମୂଲ୍ୟ - ଟ ୬.୦୦

**PARAMA PURUSHA SHRI SHRI RAMAKRUSNA PARAMAHANSA**

Writer – **Dr. Manasa Das**

Ist Edition – 2002

Publisher – Shri Bhubanananda Tripathy
Director, **S.R.C. for Adult Education, Orissa**
Janasiksha Bhawan, Unit- V
Bhubaneswar-751001

Cover & Lay out Design- Sri Braja Kishore Jena

Publication No. – S. R. C. 357- 3 /2002- 03

Copies Printed – 1000

Printed at – **Jagannath Process Pvt. Ltd. Cuttack-2**

Price – Rs. 6.00

**ସା**ତ ଆଠ ବର୍ଷର ପିଲାଟିଏ । ଶାନ୍ତ, ସରଳ, ଆଉ ଚଞ୍ଚଳ ସ୍ୱଭାବର । ସାଙ୍ଗସାଥି ମେଳରେ ସବୁବେଳେ ହସ କୌତୁକରେ ସମୟ କଟାଉଥାଏ । ତେବେ ତା'ର ମନେ ରଖିବା ଶକ୍ତି ଥିଲା ଅତି ଅଧିକ । ଥରେ ଶୁଣିବା ମାତ୍ରେ ସବୁ କଥା ମନେ ରଖୁଥିଲା । ବିଶେଷତଃ ପୁରାଣ, ଭଜନ, ମହାପୁରୁଷଙ୍କ ଜୀବନ କାହାଣୀ ଓ ସ୍ତୋତ୍ର ଆଦି ଶୁଣିବାକୁ ସେ ଭାରି ଭଲ ପାଉଥିଲା । ସେସବୁକୁ ଶୁଣି ସେ ଅବିକଳ ମନେ ରଖି ପାରୁଥିଲା ।

ଥରକର ଘଟଣା । ପିଲାଟିର ଘର ପାଖରେ ଥିବା ପାନ୍ଥଶାଳାରେ କେତେକ ସାଧୁ ସନ୍ୟାସୀ ଆସି ରହିଲେ । ସାଧୁସନ୍ଥମାନଙ୍କ ପ୍ରତି ତା'ର ଥିଲା ପ୍ରଗାଢ଼ ଭକ୍ତି । ସେମାନଙ୍କ ସହିତ ମିଶିବାକୁ ଓ ତାଙ୍କଠାରୁ ଶାସ୍ତ୍ର ଆଲୋଚନା ଶୁଣିବାକୁ ସେ ଭାରି ଭଲ ପାଉଥିଲା । ସେମାନଙ୍କର କୌପୀନ ପିନ୍ଧା ସହିତ ବିଭୂତି ବୋଳା ବେଶ, ଜପ, ତପ ଓ ଧ୍ୟାନ କରିବାର ଅଭ୍ୟାସ ତା' ମନରେ ଗଭୀର ରେଖାପାତ କରୁଥିଲା । ସେଥିପାଇଁ ସେ ସାଧୁମାନଙ୍କ ଆକର୍ଷଣରେ ପ୍ରତିଦିନ ସେଠାକୁ ଯାଉଥିଲା । ସାଧୁମାନେ ମଧ୍ୟ ତା'ର ଭକ୍ତି ଦେଖି ତାକୁ ଖୁବ୍ ସ୍ନେହ ଆଦର କରୁଥିଲେ । ଦିନେ ଦିନେ ଘରକୁ ଫେରିଲାବେଳେ ସେ ବିଭୂତି ବୋଳି ହୋଇ ଫେରୁଥିଲା । କେଉଁ ଦିନ ବି କୌପୀନ ପିନ୍ଧି ସନ୍ୟାସୀମାନଙ୍କ ପରି ବେଶ ଭୂଷା ହେଉଥିଲା । ତା'ର ଏପରି ଆଚରଣ ଦେଖି ମାଆ ମନରେ ଭୟ ପାଉଥିଲେ । ସାଧୁ ସନ୍ୟାସୀମାନେ ତାଙ୍କ ପୁଅକୁ ଶିଖାଇ ଚେଲା କରି ନେଇଯିବାର ଆଶଙ୍କା ତାଙ୍କ ମନରେ

ଦେଖା ଦେଇଥିଲା । ଦିନେ ସେ ଆଉ ସମ୍ଭାଳି ପାରିଲେ ନାହିଁ । କାନ୍ଦି କାନ୍ଦି ସେମାନଙ୍କ ନିକଟକୁ ନଯିବା ପାଇଁ ପୁଅକୁ ବାରଣ କଲେ ।

ପିଲାଟି ମା'ଙ୍କର ଏପରି ବିକଳ ଅବସ୍ଥା ଦେଖି ସାଧୁମାନଙ୍କ ନିକଟକୁ ନ ଯିବାକୁ ଠିକ୍ କଲା । ତା' ପରଦିନ ସେ ସାଧୁମାନଙ୍କୁ ସବୁକଥା କହି ସେମାନଙ୍କଠାରୁ ବିଦାୟ ନେଇଥିଲା । ସେମାନେ ତ ପିଲାଟିକୁ ଖୁବ୍ ସ୍ନେହ ଆଦର କରୁଥିଲେ, ତେଣୁ ସେମାନେ ତା' ମାଆଙ୍କୁ ବୁଝାଇଲେ । ତାଙ୍କ ପୁଅର ଈଶ୍ୱର ଭକ୍ତି, ଧର୍ମ ପ୍ରୀତି କଥା କହିଲେ । ପୁଅକୁ ଭୁଲାଇ ନେଇଯିବା ସେମାନଙ୍କର ଉଦ୍ଦେଶ୍ୟ ନୁହେଁ ବୋଲି ସ୍ପଷ୍ଟ କରିଦେଲେ । ସବୁ କଥା ଜାଣିବାପରେ ମାଆଙ୍କ ମନ ବଦଳିଗଲା । ସାଧୁମାନଙ୍କ ନିକଟକୁ ଯିବାକୁ ସେ ପୁଅକୁ ଅନୁମତି ଦେଇଥିଲେ ।

ଏହି ପିଲାଟି ବଡ଼ ହେବା ପରେ ଅସାଧାରଣ ପ୍ରତିଭାର ଅଧିକାରୀ ହୋଇଥିଲେ । ନିଜର କଠୋର ସାଧନା ବଳରେ ସେ ଈଶ୍ୱରଙ୍କର ଦର୍ଶନ ପାଇ ପାରିଥିଲେ । ସେହି ଅସାଧାରଣ ପ୍ରତିଭାଧାରୀ ମହାପୁରୁଷ ହେଉଛନ୍ତି ଶ୍ରୀଶ୍ରୀ ରାମକୃଷ୍ଣ ପରମହଂସ । ଦେଶର କୋଟି କୋଟି ନରନାରୀଙ୍କୁ ଉତ୍ତମ ଜୀବନ ଯାପନର ପଥ ପ୍ରଦର୍ଶନ କରାଇ ସେ ଭାରତର ଜାତୀୟ ଜୀବନରେ ଏକ ନବଜାଗରଣ ସୃଷ୍ଟି କରିଯାଇଛନ୍ତି ।

## ମିଁ ହିଁ ଗଦାଧର :

ପଶ୍ଚିମବଙ୍ଗର ହୁଗୁଳି ଜିଲ୍ଲା ଅନ୍ତର୍ଗତ କାମାରପୁକୁର ଗ୍ରାମ । ଏହି ଗ୍ରାମରେ ଏକ ସମ୍ଭ୍ରାନ୍ତ ବ୍ରାହ୍ମଣ କୁଳରେ ଶ୍ରୀ ରାମକୃଷ୍ଣ ୧୮୩୬ ମସିହା ଫେବୃଆରୀ ମାସ ୧୮ ତାରିଖରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ହେଉଛି ଖୁଦିରାମ ଚଟ୍ଟୋପାଧ୍ୟାୟ ଓ ମାଆଙ୍କ ନାମ

ଚନ୍ଦ୍ରମଣି ଦେବୀ । ଖୁଦିରାମ ଥିଲେ ଜଣେ ସରଳ, ସତ୍ୟବାଦୀ, ଧାର୍ମିକ ଓ ଆଦର୍ଶ ମଣିଷ । ସେ ବିଷ୍ଣୁଙ୍କୁ ଉପାସନା କରୁଥିଲେ । ତାଙ୍କ ପତ୍ନୀ ମଧ୍ୟ ଜଣେ ସାଧ୍ୱୀ, ପତିବ୍ରତା ଓ ଧର୍ମପରାୟଣା ମହିଳା ଥିଲେ । ଉଭୟ ସ୍ୱାମୀ ସ୍ତ୍ରୀଙ୍କର ଈଶ୍ୱରଙ୍କ ଉପରେ ପ୍ରଗାଢ଼ ଭକ୍ତି ଥିଲା ।

୧୮୩୫ ମସିହାର କଥା । ଦିନେ ଖୁଦିରାମ ଗୟା କ୍ଷେତ୍ରକୁ ତୀର୍ଥ ଯାତ୍ରାରେ ବାହାରିଲେ । ସେଠାରେ ଥିବା ପ୍ରଭୁ ଗଦାଧରଙ୍କୁ ଦର୍ଶନ କରିବା ନିମନ୍ତେ ସେ ଅନେକ ଦିନରୁ ମନ ବଳାଇଥିଲେ । କିନ୍ତୁ ସୁବିଧା ହେଉ ନଥିବାରୁ ସେ ଠାକୁରଙ୍କୁ ଦର୍ଶନ କରିବା ନିମନ୍ତେ ଯାଇପାରୁ ନଥିଲେ । ଏବେ ହୁଏତ ପ୍ରଭୁଙ୍କ ଡାକରା ଆସିଲା । ସେ ସେଠାକୁ ଟାଣି ହୋଇଗଲେ । ପାଦରେ ଚାଲି ଚାଲି କିଛି ଦିନ ପରେ ସେଠାରେ ପହଞ୍ଚି ଖୁଦିରାମ ଗଦାଧରଙ୍କୁ ଦର୍ଶନ କଲେ । ସଂଧ୍ୟା ବେଳକୁ ସଂଧ୍ୟା ଆଳତି ଦେଖି ଆନନ୍ଦରେ ବିମୋହିତ ହୋଇଗଲେ । ସେଠାରେ ଥିବା ପୂଜକ ତାଙ୍କୁ ପ୍ରସାଦ ଆଣିଦେଲେ ଓ ରାତିରେ ସେହି ବେଢ଼ା ଭିତରେ ବିଶ୍ରାମ ନେବା ପାଇଁ କହିଲେ । ଖୁଦିରାମ ମଧ୍ୟ ମନ୍ଦିର ବେଢ଼ାରେ ଖୁସିରେ ରାତି କଟାଇଲେ ।

ଖୁଦିରାମ ସେଠାରେ ଶୋଇଥିବା ଅବସ୍ଥାରେ ଏକ ଚମତ୍କାର ସ୍ୱପ୍ନ ଦେଖିଲେ । ତାଙ୍କୁ ଲାଗିଲା, ସତେ ଯେପରି ପ୍ରଭୁ ଗଦାଧର ତାଙ୍କ ପାଖରେ ଠିଆହୋଇ କହୁଛନ୍ତି- "ଖୁଦିରାମ ! ମୁଁ ତୁମ ପୁତ୍ର ଭାବରେ ଜନ୍ମଗ୍ରହଣ କରିବି ।" ହଠାତ୍ ଖୁଦିରାମଙ୍କର ନିଦ ଭାଙ୍ଗିଗଲା । ସେତେବେଳକୁ ରାତ୍ରି ପ୍ରାୟ ଚତୁର୍ଥ ପ୍ରହର ହେବ । ସେ ମନେ ମନେ ଭାବିଲେ- ଏଥର ନିଶ୍ଚୟ ସେ ଏକ ଅସାମାନ୍ୟ ପୁତ୍ର ସନ୍ତାନ ଲାଭ

କରିବେ । ପରଦିନ ସକାଳୁ ନିତ୍ୟକର୍ମ ସାରି ସେ ଗଦାଧରଙ୍କୁ ଦର୍ଶନ କଲେ ଓ ପୂଜା ସାରି ଖୁସି ମନରେ ଘରକୁ ଫେରିଲେ ।

ପ୍ରଭୁଙ୍କ ଲୀଳା ଅସୀମ । ଏପଟେ କାମାରପୁକୁର ଗ୍ରାମରେ ଠିକ୍ ସେହି ସମୟର କଥା । ଖୁଦିରାମଙ୍କ ପତ୍ନୀ ଚନ୍ଦ୍ରମଣି ଦେବୀ ଶିବ ମନ୍ଦିରକୁ ପୂଜା କରିବାକୁ ଯାଇଥିଲେ । ପ୍ରଭୁଙ୍କୁ ଆରାଧନା କରିବା ସମୟରେ ସେ ଅନୁଭବ କଲେ, ଯେପରି ଏକ ଉଜ୍ଜ୍ୱଳ ଆଲୋକ ରେଖା ଶିବଙ୍କ ନିକଟରୁ ତାଙ୍କ ଆଡ଼କୁ ବିଜୁଳି ବେଗରେ ଗତି କରୁଛି । ଏହାପରେ ସେ ଚେତା ହରାଇ ପଡ଼ିଯାଇଥିଲେ । କିଛି ସମୟ ପରେ ଚେତା ଫେରି ଆସିବାରୁ ସେ ପ୍ରଭୁଙ୍କୁ ଭକ୍ତିରେ ପ୍ରଣାମ ଜଣାଇ ଘରକୁ ଫେରିଲେ ।

ତୀର୍ଥରୁ ଫେରିବା ପରେ ଖୁଦିରାମ ନିଜ ସ୍ୱପ୍ନ କଥା ସ୍ତ୍ରୀଙ୍କୁ କହିଲେ । ସ୍ତ୍ରୀ ମଧ୍ୟ ଶିବ ମନ୍ଦିରରେ ନିଜର ଅନୁଭୂତି କଥା ତାଙ୍କୁ ଜଣାଇଲେ । ସେମାନଙ୍କ ପ୍ରତି ପ୍ରଭୁଙ୍କର କୃପା ଦୃଷ୍ଟି ବୋଲି ଉଭୟେ ଧରି ନେଇଥିଲେ । ଏହାପରେ ୧୮୩୬ ମସିହା ଫେବୃୟାରୀ ମାସ ୧୮ ତାରିଖରେ ସେମାନଙ୍କର ଏକ ପୁତ୍ର ସନ୍ତାନ ଜନ୍ମ ହୋଇଥିଲା । ଖୁଦିରାମ ନିଜ ସ୍ୱପ୍ନ କଥା ମନେ ପକାଇ ଏହି ପୁତ୍ରର ନାମ ଦେଇଥିଲେ ଗଦାଧର, ଯାହାର ଅନ୍ୟ ଅର୍ଥ ବିଷ୍ଣୁ । ଘରେ ସମସ୍ତେ ଆଦରରେ ତାଙ୍କୁ ଡାକୁଥିଲେ ଗଦାଇ ।

## ପିଲାଦିନର କେତୋଟି ସ୍ମରଣୀୟ ଘଟଣା

ଗଦାଧରଙ୍କ ପିଲାଦିନ ଥିଲା ଅତ୍ୟନ୍ତ କୌତୁକପୂର୍ଣ୍ଣ । ସେତେବେଳେ ତାଙ୍କର ବିଭିନ୍ନ କାର୍ଯ୍ୟକଳାପ ଗ୍ରାମବାସୀଙ୍କୁ ଆମୋଦିତ



କରୁଥିଲା । ଗୋପପୁରରେ ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା ଯେପରି ସମସ୍ତଙ୍କୁ ଚକିତ ଓ ବିସ୍ମିତ କରୁଥିଲା, ସେହିପରି ଗଦାଧରଙ୍କର ଅନେକ କାର୍ଯ୍ୟକଳାପ ତାଙ୍କ ଗାଁ କାମାରପୁକୁରରେ ସମସ୍ତଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରୁଥିଲା । ରାମାୟଣ ଓ ମହାଭାରତର କଥାବସ୍ତୁକୁ ସେ ମୁହେଁ ମୁହେଁ କହିଯାଉଥିଲେ ଓ ଅଭିନୟ କରି ସମସ୍ତଙ୍କୁ ଆନନ୍ଦ ଦେଉଥିଲେ । କିନ୍ତୁ ବେଳେବେଳେ ଏପରି ଅବସ୍ଥା ହେଉଥିଲା ଯେ, ସେ ନିଜକୁ ସଂପୂର୍ଣ୍ଣ ଭାବେ ଭୁଲିଯାଉଥିଲେ । ଏପରିକି ପ୍ରକୃତିର କୌଣସି ସୁନ୍ଦର ଦୃଶ୍ୟ ତାଙ୍କ ମନକୁ ଛୁଇଁଲେ, ସେ ଆତ୍ମବିଭୋର ହୋଇ ପଡୁଥିଲେ । ସେତେବେଳେ ବାହ୍ୟ ଜଗତର ଜ୍ଞାନ ତାଙ୍କର ରହୁ ନଥିଲା । ସେ ଯେପରି ତାରି ଭିତରେ ଲୀନ ହୋଇ ଯାଉଥିଲେ । ତାଙ୍କର ଏପରି ଅବସ୍ଥା ଦେଖି ବାପା ମା' ଚିନ୍ତିତ ହୋଇ ପଡୁଥିଲେ ।

ଥରକର ଘଟଣା । ସେତେବେଳକୁ ତାଙ୍କୁ ସାତ ବର୍ଷ ବୟସ ହେବ । ସେ ସାଙ୍ଗମାନଙ୍କ ସହିତ ଧାନ ବିଲ ଭିତର ଦେଇ ଯାଉଥାନ୍ତି । ହଠାତ୍ କଳାହାଣ୍ଡିଆ ମେଘ ଆକାଶରେ ଘୋଟିଆସିଲା । ଗଦାଧର ଆକାଶକୁ ଚାହିଁ ଦେଖିଲେ, କଳାହାଣ୍ଡିଆ ମେଘ ଦେହରେ ଧାଡ଼ିଏ ଧଳା ବଗ ଉଡ଼ିଯାଉଛନ୍ତି । ଆହାଃ- କି ସୁନ୍ଦର ଦୃଶ୍ୟ ! ପ୍ରକୃତିର ଏହି ମନୋରମ ଦୃଶ୍ୟ ଦେଖୁ ଦେଖୁ ହଠାତ୍ ଗଦାଧର ଭାବପ୍ରବଣ ହୋଇ ପଡ଼ିଲେ । ତାଙ୍କର ଶରୀର ରୋମାଞ୍ଚିତ ଓ ମନ ପୁଲକିତ ହୋଇଉଠିଲା । ସେ ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ । ସାଙ୍ଗମାନେ ତାଙ୍କୁ ଘରକୁ ଟେକି ନେଇଗଲେ । ସେବା ଶୁଶ୍ରୂଷା କରିବା ପରେ ତାଙ୍କର ଚେତା ଫେରି ଆସିଥିଲା । ଏହାହିଁ ଥିଲା ତାଙ୍କ ଭାବ ସମାଧିର ପ୍ରଥମ ଅବସ୍ଥା ।

ଆଉ ଦିନକର ଘଟଣା । ଗଦାଧର ତାଙ୍କ ଗାଁର କେତେକ ସ୍ତ୍ରୀଲୋକଙ୍କ ସହିତ ଦେବୀ ବିଶାଳାକ୍ଷୀଙ୍କ ଦର୍ଶନରେ ବାହାରିଲେ । ଦେବୀ ବିଶାଳାକ୍ଷୀଙ୍କ ମନ୍ଦିର ତାଙ୍କ ଗାଁ କାମାରପୁକୁରଠାରୁ ଅଳ୍ପ ଦୂରରେ ଥିଲା । ଗଦାଧରଙ୍କ ବୟସ ସେତେବେଳକୁ ଆଠ ବର୍ଷ ହେବ । ସେ ଦେବୀଙ୍କ ଦର୍ଶନରେ ଯାଉଥିବାବେଳେ ବାଟରେ ଦେବୀଙ୍କର ଭଜନ ଗାଉଥାନ୍ତି । ଅତି ସୁଲଳିତ କଣ୍ଠସ୍ୱର ତାଙ୍କର । ସ୍ତ୍ରୀଲୋକମାନେ ତନ୍ମୟ ହୋଇ ଗୀତ ଶୁଣି ଶୁଣି ଚାଲିଥାନ୍ତି । ହଠାତ୍ ଗଦାଧରଙ୍କ କଣ୍ଠରୁ ଗୀତ ବନ୍ଦ ହୋଇଗଲା । ତାଙ୍କର ଶରୀର ଅବଶ ହୋଇ ପଡ଼ିଲା । ସେ ଗୋଟିଏ ଜାଗାରେ ସ୍ଥିର ହୋଇ ରହିଗଲେ । ତାଙ୍କର ବାହ୍ୟ ଜ୍ଞାନ ରହିଲା ନାହିଁ । ଆଖିରୁ ଖାଲି ଧାର ଧାର ହୋଇ ଲୁହ ଝରି ପଡୁଥାଏ ।

ଗଦାଧରଙ୍କର ଏପରି ଅବସ୍ଥା ଦେଖି ସ୍ତ୍ରୀଲୋକମାନେ ବ୍ୟସ୍ତ ହୋଇପଡ଼ିଲେ । କ'ଣ କରିବେ ଭାବି ପାରିଲେ ନାହିଁ । ସେମାନଙ୍କର ମୁହଁ ଶୁଖିଗଲା । କେତେଜଣ ଭାବିଲେ - ବୋଧହୁଏ ପିଲାଟି ଦେହରେ ସ୍ୱୟଂ ଦେବୀ ଉଭା ହୋଇଛନ୍ତି । ଚାଲ ଦେବୀଙ୍କୁ ଗୁହାରି କରିବା । ଏଇଆ ଭାବି ସେମାନେ ଭକ୍ତିରେ ଦେବୀଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ । ଦେବୀଙ୍କ ନାମ ମଧ୍ୟ ଗଦାଧରଙ୍କ କାନ ନିକଟରେ ବାରମ୍ବାର ଉଚ୍ଚାରଣ କଲେ । ଫଳରେ ଗଦାଧରଙ୍କର ଚେତା ଧୀରେ ଧୀରେ ଫେରି ଆସିଲା ଓ ତାଙ୍କ ମୁହଁରେ ହସ ଫୁଟି ଉଠିଲା । କାହିଁକି ଏପରି ହେଲା ବୋଲି ପଚାରିବାରୁ ଗଦାଧର ହସି ହସି ଉତ୍ତର ଦେଲେ- ମୁଁ ଦେବୀଙ୍କ ଭଜନ ଗାଉ ଗାଉ ହଠାତ୍ ମୋ ମନ ଦେବୀଙ୍କ ପାଦପଦ୍ମରେ ଲୀନ ହୋଇଗଲା । ମୁଁ ସ୍ଥିର ହୋଇଗଲି । ଏହାପରେ ମୁଁ ଆଉ କିଛି ଜାଣି ନାହିଁ । ଏହା ହିଁ ଥିଲା ଗଦାଧରଙ୍କ ପିଲାଦିନର ଭାବ-ସମାଧି । କୌଣସି ସାଧନା ନ କରି ସେ ଏହି ଭାବ - ସମାଧିର ଅଧିକାରୀ ହୋଇଥିଲେ ।

ଆଉ ଥରେ ଶିବରାତ୍ରି ଉପଲକ୍ଷ୍ୟେ ଗାଁରେ ଯାତ୍ରା ହେଉଥାଏ । ଲୋକମାନେ ଖୁସି ମନରେ ଯାତ୍ରା ଦେଖିବାକୁ ଏକାଠି ହୋଇଥାନ୍ତି । ଖବର ମିଳିଲା - ଶିବ ଭୂମିକାରେ ଅଭିନୟ କରୁଥିବା ପିଲାଟିର ଦେହ ଭାରି ଖରାପ । ସେ ଆସି ପାରିବ ନାହିଁ । କ'ଣ କରାଯିବ ? ସମସ୍ତେ କହିଲେ - ଗଦାଧରଙ୍କୁ ଆଣ । ସେ ଶିବ ଭୂମିକାରେ ଭଲ ଅଭିନୟ କରିବ ଓ ଶିବଙ୍କ ଭଜନ ମଧ୍ୟ ମଧୁର କଣ୍ଠରେ ଗାଇ ପାରିବ । ସେଇଆ ହେଲା । ଗଦାଧରଙ୍କୁ ଶିବ ବେଶରେ ସଜାଇ ଦିଆଗଲା । ମୁଣ୍ଡରେ

ତାଙ୍କର ଜଟା, ବେକରେ ରୁଦ୍ରାକ୍ଷମାଳା, ଦେହରେ ବିଭୂତି ବୋଳି ଦିଆଗଲା । ଗୋଟିଏ ହାତରେ ଡମ୍ବରୁ ଓ ଅନ୍ୟ ହାତରେ ତ୍ରିଶୂଳ ଧରାଇ ଦେବା ପରେ ଗଦାଧର ସତେ ଯେପରି ଅବିକଳ ଶିବ ବୋଲି ସମସ୍ତଙ୍କର ମନେ ହେଲା ।

ମଞ୍ଚ ଉପରକୁ ଆସିବା ପରେ ପରେ ଗଦାଧର ନିଶ୍ଚଳ ହୋଇଗଲେ । ତାଙ୍କ ପାଟିରୁ କୌଣସି କଥା ବାହାରିଲା ନାହିଁ । ସତେ ଯେପରି ସେ ସ୍ୱୟଂ ଶିବ, ସେହିପରି ମୂର୍ତ୍ତିଟିଏ ହୋଇ ଠିଆ ହୋଇଥାନ୍ତି । ହଲ୍‌ଚଲ୍ ବି ହେଉ ନ ଥାନ୍ତି । ଏହା ଦେଖି ଦର୍ଶକମାନେ 'ହରିବୋଲ' ଧ୍ୱନିରେ ସେ ସ୍ଥାନ ମୁଖରିତ କରିଦେଲେ । ଗଦାଧରଙ୍କୁ ସେହିପରି ଅବିଚଳିତ ଅବସ୍ଥାରେ ଘରକୁ ଟେକି ଆଣିଲେ ଓ କାନ ପାଖରେ ଶିବ ମନ୍ତ୍ର ଉଚ୍ଚାରଣ କଲେ । ଏହାର ବହୁ ସମୟ ପରେ ତାଙ୍କର ବାହ୍ୟ ଜ୍ଞାନ ଫେରି ଆସିଲା ।

ଏହିପରି ଗଦାଧରଙ୍କ ଜୀବନର ଅନେକ ଘଟଣା କାମାରପୁକୁରରେ ସମସ୍ତଙ୍କୁ ଅଭିଭୂତ କରିଥିଲା ।

## ପ୍ରଚଳିତ ବିଧି ମାନିଲେ ନାହିଁ

ଗଦାଧରଙ୍କର ପାଠ ପଢ଼ା ଆରମ୍ଭ ହେଲା ପାଞ୍ଚ ବର୍ଷ ବୟସରେ । ପିତା ଖୁଦିରାମ ପୁଅର ଅସାଧାରଣ ସ୍ମୃତି ଶକ୍ତି ଦେଖି ଗାଁର ପାଠଶାଳାରେ ଗଦାଧରଙ୍କ ନାଁ ଲେଖାଇ ଦେଇଥିଲେ । କିନ୍ତୁ ପାଠ ପଢ଼ାରେ ତାଙ୍କର ମନ ନଥିଲା । ଗଣିତ ପାଠକୁ ତ ସେ ଆଦୌ ଭଲ ପାଉ ନଥିଲେ । କେବଳ ସାଙ୍ଗମାନଙ୍କ ସହିତ ମିଶି ଖେଳ କୌତୁକରେ ମଜ୍ଜି ରହୁଥିଲେ । ଅଧିକାଂଶ ସମୟରେ ସେ ଚାଟଶାଳୀକୁ ଯାଉ

ନଥିଲେ । ଦେବାଦେବୀଙ୍କ ଭଜନ ଓ ମନ୍ତ୍ରପାଠ ଆଦିରେ ବହୁ ସମୟ ବିତାଇ ଦେଉଥିଲେ ।

ଗଦାଧରଙ୍କୁ ଆଠ ବର୍ଷ ବୟସ ହୋଇଥିଲାବେଳେ ତାଙ୍କ ପିତାଙ୍କର ପରଲୋକ ହୋଇଗଲା । ସେ ପିତାଙ୍କୁ ଅତି ଭଲ ପାଉଥିଲେ । ତାଙ୍କ ମୃତ୍ୟୁରେ ସେ ଖୁବ୍ ବିଚଳିତ ହୋଇ ପଡ଼ିଲେ । ବେଳେ ବେଳେ ଗଭୀର ଦୁଃଖରେ ଶ୍ମଶାନରେ ବୁଲାବୁଲି କରୁଥିଲେ ଓ ଆଉ କେତେ ବେଳେ ଚୁପ୍ ଚାପ୍ ବସି ରହୁଥିଲେ । ଆଗ ଭଳି ସାଙ୍ଗମାନଙ୍କ ସହିତ ହସ ଖେଳରେ ବେଶି ସମୟ କଟାଉ ନଥିଲେ । ତାଙ୍କ ଭିତରେ ଏକ ପରିବର୍ତ୍ତନ ଲକ୍ଷ୍ୟ କରାଯାଇଥିଲା ।

ଗଦାଧରଙ୍କୁ ନଅ ବର୍ଷ ହେଲାବେଳକୁ ତାଙ୍କର ବ୍ରତୋପନୟନ କରାଗଲା । ଏହି ସମୟରେ ସେ ପ୍ରଚଳିତ ପ୍ରଥା ବିରୁଦ୍ଧରେ ଯାଇ ଏକ ସାହସିକ କାର୍ଯ୍ୟ କରିଥିଲେ । ବ୍ରାହ୍ମଣ କୁଳର ପ୍ରଥା ଅନୁସାରେ ବ୍ରତୋପନୟନ ପରେ ବ୍ରହ୍ମଚାରୀ ଉପବୀତ ଧାରଣ କରେ । ଏହାପରେ ସେ ବ୍ରତଭିକ୍ଷା ଗ୍ରହଣ କରେ । କିନ୍ତୁ ବ୍ରହ୍ମଚାରୀ ଜଣକ ଏହି ବ୍ରତ ଭିକ୍ଷା ନିଜ ପରିବାରର ବା କୌଣସି ସଂପର୍କୀୟ ବ୍ୟକ୍ତିଙ୍କଠାରୁ ପ୍ରଥମେ ଗ୍ରହଣ କରିବା କଥା । ଯଦି ଏପରି କୌଣସି ବ୍ୟକ୍ତିଙ୍କଠାରୁ ଭିକ୍ଷା ଗ୍ରହଣ କରିବାରେ କିଛି ଅସୁବିଧା ହୁଏ, ତେବେ ବ୍ରାହ୍ମଣ ସମାଜରୁ ସେହିପରି ଜଣେ ସମାନ ସ୍ତରୀୟ ବ୍ୟକ୍ତିଙ୍କଠାରୁ ବ୍ରତଭିକ୍ଷା ଗ୍ରହଣ କରାଯାଇ ପାରିବ । ଏହି କୌଳିକ ପ୍ରଥାକୁ ସମସ୍ତେ ମାନି ଥାଆନ୍ତି । ମାତ୍ର ଗଦାଧର ଏହି ପ୍ରଚଳିତ ବିଧିକୁ ମାନି ନଥିଲେ ।

ଗଦାଧର ଉପବୀତ ଧାରଣ କରିବା ପରେ ଏକୁଡ଼ିଶାଳରେ ତାଙ୍କୁ ଯେଉଁ ଧାଈ ସ୍ନେହ ଶ୍ରଦ୍ଧା ଦେଇଥିଲା, ତା'ଠାରୁ ସେ ପ୍ରଥମ ଭିକ୍ଷା ଗ୍ରହଣ କରିଥିଲେ । ଆତ୍ମୀୟ ସ୍ୱଜନମାନେ ଏଥିରେ ଅସନ୍ତୋଷ ପ୍ରକାଶ କରିଥିଲେ ମଧ୍ୟ ଗଦାଧର ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ । ତାଙ୍କର ଯୁକ୍ତି ଥିଲା- ସବୁ ମଣିଷ ତ ସମାନ । ତେବେ ପ୍ରତ୍ୟେକ ମଣିଷକୁ ଉଦାର ହୃଦୟରେ ସ୍ନେହ ଶ୍ରଦ୍ଧା ନ କରି ସାମାଜିକ ପ୍ରଥାକୁ ଧରି ବସିବାରେ ଲାଭ କ'ଣ ? ବରଂ ମଣିଷ ମଣିଷ ଭିତରେ ସୁସଂପର୍କ ସ୍ଥାପନ କରିପାରିଲେ ଜୀବନ ଧନ୍ୟ ହେବ ।

## ପାଠପଢ଼ା ଛାଡ଼ି ଦେବୀ ପୂଜା

ଖୁଦିରାମଙ୍କ ମୃତ୍ୟୁ ପରେ ଘରର ସମସ୍ତ ଦାୟିତ୍ୱ ପଡ଼ିଲା ବଡ଼ ପୁଅ ରାମକୁମାରଙ୍କ ଉପରେ । ରାମକୁମାର ପରିବାର ଚଳାଇବା ପାଇଁ କଲିକତାରେ କିଛି କାମ ଖୋଜି ଗଲେ । ସେଠାରେ ଝାମାପୁକୁର ଗାଁରେ ଗୋଟିଏ ସଂସ୍କୃତ ଟୋଲ ଖୋଲି ଛାତ୍ରମାନଙ୍କୁ ପଢ଼ାଇଲେ । ସାନ ଭାଇ ରାମେଶ୍ୱର ଓ ଗଦାଧର ଗାଁରେ ମାଆ ପାଖରେ ଥିଲେ । ଗଦାଧରଙ୍କ ପାଠ ପଢ଼ା ପାଇଁ ରାମକୁମାର ଯେତେ ଯତ୍ନ କଲେ ମଧ୍ୟ ଗଦାଧର ପାଠ ପଢ଼ାରେ ମନ ଦେଲେ ନାହିଁ । ଗଦାଧରଙ୍କ ପାଠପଢ଼ା ପ୍ରତି ଆଗ୍ରହ ନଥିବା ଦେଖି ରାମକୁମାର ତାଙ୍କୁ ନିଜ ପାଖକୁ ନେଇ ଯିବାକୁ ଉଚିତ ମନେ କଲେ । ଗଦାଧର ମଧ୍ୟ ଭାଇଙ୍କ ସହିତ କଲିକତା ଯିବାକୁ ଖୁସିରେ ରାଜି ହୋଇଗଲେ ।

ରାମକୁମାର ୧୮୪୯ ମସିହାରେ ଗଦାଧରଙ୍କୁ ସାଙ୍ଗରେ ନେଇ କଲିକତା ଯାତ୍ରା କଲେ । ସେତେବେଳେ ଗଦାଧରଙ୍କ ବୟସ ହୋଇଥିଲା

ପନ୍ଦର ବର୍ଷ । ରାମ କୁମାର ତାଙ୍କୁ କଲିକତାରେ ପୂଜକ ଓ ପୁରୋହିତ କାମରେ ଲାଗାଇଦେଲେ । ଗଦାଧରଙ୍କର ପୂଜାପୂଜି ପ୍ରତି ପ୍ରଗାଢ଼ ଅନୁରକ୍ତି ଥିଲା । ତେଣୁ ତାଙ୍କୁ ପୂଜକ ଓ ପୁରୋହିତ କାମ ଖୁବ୍ ଆନନ୍ଦ ଦେଲା । ସେ ଅଧିକ ନିଷ୍ଠାର ସହ ଏସବୁ କାମ କରିବାକୁ ଲାଗିଲେ ।

ଏତିକିବେଳେ କଲିକତାର ଜଣେ ଧନୀ ବିଧବା ମହିଳା ଗଙ୍ଗା ନଦୀର ପୂର୍ବ ଦିଗରେ ଏକ କାଳୀ ମନ୍ଦିର ତିଆରି କଲେ । ତାଙ୍କ ନାଁ ରାଣୀ ରାସମଣି । ସେ ଥିଲେ ଜଣେ ଧର୍ମପରାୟଣା ମହିଳା । ଈଶ୍ୱରଙ୍କ ପ୍ରତି ଥିଲା ତାଙ୍କର ଅସୀମ ବିଶ୍ୱାସ । ବିଶେଷ ଭାବେ କାଳୀ ଠାକୁରାଣୀଙ୍କ ପ୍ରତି ତାଙ୍କ ମନରେ ଖୁବ୍ ଭକ୍ତି ଥିଲା । ଗରିବମାନଙ୍କୁ ସେ ଅକାତରରେ ଦାନ କରୁଥିଲେ । ଲୋକମାନେ ମଧ୍ୟ ତାଙ୍କୁ ଖୁବ୍ ଶ୍ରଦ୍ଧା କରୁଥିଲେ । ରାଣୀ ରାସମଣି କଲିକତାର ଚାରି ମାଇଲ ଉତ୍ତରକୁ ଦକ୍ଷିଣେଶ୍ୱରଠାରେ ପ୍ରାୟ କୋଡ଼ିଏ ଏକର ଜମି କିଣି କାଳୀ ମନ୍ଦିର ନିର୍ମାଣ କରାଇଥିଲେ । ମନ୍ଦିର ଚାରି ପାଖରେ ସୁନ୍ଦର ବଗିଚା ମଧ୍ୟ କରାଇଥିଲେ । କାଳୀ ମନ୍ଦିରକୁ ଛାଡ଼ିଦେଲେ ଏଠାରେ ରାଧାକାନ୍ତ ମନ୍ଦିର ଅଛି । ଏହି ମନ୍ଦିରରେ ପୂଜା ପାଉଛନ୍ତି ରାଧା ଓ କୃଷ୍ଣ । ଉଭୟ ମନ୍ଦିରର ସମ୍ମୁଖ ଭାଗରେ ଶିବଲିଙ୍ଗ ପୂଜା ପାଉଛନ୍ତି । ଏହା ବ୍ୟତୀତ ମନ୍ଦିରର କର୍ମଚାରୀମାନଙ୍କ ରହିବା ନିମନ୍ତେ ମନ୍ଦିର ନିକଟରେ କେତେକ ଘର ତିଆରି କରାଯାଇଛି ।

ରାଣୀ ରାସମଣି ଏହି କାଳୀ ମନ୍ଦିରର ପୂଜକ ଭାବରେ ଝାମାପୁକୁର ସଂସ୍କୃତ ଟୋଲର ପଣ୍ଡିତ ରାମକୁମାରଙ୍କୁ ଦାୟିତ୍ୱ ଦେଲେ । ଅନ୍ୟ ଜଣେ ବ୍ରାହ୍ମଣ ରାଧା ଗୋବିନ୍ଦ ଜୀଉଙ୍କ ପୂଜା ଭାର ଗ୍ରହଣ କଲେ । ଗଦାଧର ଭାଇ ରାମକୁମାରଙ୍କୁ ପୂଜା କାମରେ ସାହାଯ୍ୟ

କଲେ । ଗଦାଧରଙ୍କୁ ମଧ୍ୟ ଦକ୍ଷିଣେଶ୍ୱରର କାଳୀ ମନ୍ଦିର ପରିସର ଖୁବ୍ ଭଲ ଲାଗିଲା । ମନ୍ଦିର ଚତୁଃପାର୍ଶ୍ୱର ଶାନ୍ତ ସୁନ୍ଦର ପରିବେଶ, ମନୋରମ ଉଦ୍ୟାନ ତାଙ୍କ ସାଧନା ମାର୍ଗକୁ ଉନ୍ମୁକ୍ତ କରିଥିଲା ।

ଅନ୍ୟ ପକ୍ଷରେ ଦକ୍ଷିଣେଶ୍ୱରର ବାସିନ୍ଦାମାନଙ୍କୁ ଗଦାଧରଙ୍କର ସୁନ୍ଦର ଚେହେରା, ଶାନ୍ତ ସରଳ ପ୍ରକୃତି ଖୁବ୍ ଆକୃଷ୍ଟ କରିଥିଲା । ଖୁବ୍ ଶୀଘ୍ର ଗଦାଧର ସେମାନଙ୍କର ପ୍ରିୟ ପାତ୍ର ହୋଇ ଉଠିଥିଲେ । ରାଣୀ ରାସମଣିଙ୍କ ଜାମାତା ମଥୁର ବାବୁ ତାଙ୍କୁ ସମସ୍ତଙ୍କଠାରୁ ଅଧିକ ଭଲ ପାଉଥିଲେ । ଗଦାଧରଙ୍କୁ ଦେବୀଙ୍କ ବେଶକାରୀ ଭାବେ ନିଯୁକ୍ତ କରିବାକୁ ଥରେ ସେ ଚିନ୍ତାକଲେ । ଏକଥା ସେ ରାମକୁମାରଙ୍କୁ କହିଲେ । ରାମକୁମାର ପ୍ରଥମେ ଏଥିରେ ରାଜି ହେଲେ ନାହିଁ । କାରଣ ଦେବୀଙ୍କୁ ବେଶ କରିବା ଏକ ବଡ଼ ଦାୟିତ୍ୱ । କେବଳ ଫୁଲମାଳ ବା ଚନ୍ଦନରେ ସଜାଇଲେ ହେବ ନାହିଁ, ତା' ସହିତ ବସ୍ତ୍ର ଓ ସୁନା ଅଳଙ୍କାର ମଧ୍ୟ ପିନ୍ଧାଇବାକୁ ପଡ଼ିବ । ଗଦାଧର ଏହି ଦାୟିତ୍ୱ ଠିକ୍ ଭାବେ ତୁଲାଇ ପାରିବେ ତ ? ମାତ୍ର ମଥୁରବାବୁ ତାଙ୍କ ନିଷ୍ପତ୍ତିରେ ଅଟଳ ରହି ଗଦାଧରଙ୍କୁ ଏହି ଦାୟିତ୍ୱ ଅର୍ପଣ କଲେ ।

ଗଦାଧରଙ୍କର ଆନନ୍ଦ ଦେଖେ କିଏ ? ସେ ଏହି ନୂତନ କାମରେ ଆଗ୍ରହର ସହିତ ଯୋଗ ଦେଲେ । ଦେବୀଙ୍କୁ ବେଶ କରାଇବାବେଳେ ସେ ସଂପୂର୍ଣ୍ଣ ଭାବେ ନିଜକୁ ଭୁଲିଯାଉଥିଲେ । ମନ ପ୍ରାଣ ଦେଇ ଅତି ନିଷ୍ଠାର ସହ ଦେବୀଙ୍କୁ ସଜାଉ ଥିଲେ । ଏହି ସମୟରେ ଦେବୀଙ୍କ ଭଜନ ଗାଇ ଗାଇ ଆତ୍ମହରା ହୋଇ ପଡୁଥିଲେ ।

## ଭଙ୍ଗା ଗୋଡ଼ ଯୋଡ଼ା ହେଲା

ଗଦାଧରଙ୍କର ଥିଲା ବିଚକ୍ଷଣ ବୁଦ୍ଧି । ଯେ କୌଣସି ଜଟିଳ ସମସ୍ୟାର ସହଜ ସମାଧାନ ସେ କରିଦେଉଥିଲେ । ତାଙ୍କର ଏହି ବୁଦ୍ଧିମତ୍ତାର ପରିଚୟ ଅନେକ ଘଟଣାରୁ ଜାଣିବାକୁ ମିଳିଥିଲା ।

ଥରକର କଥା । ସେଦିନ ଥାଏ ଭାଦ୍ରବ ମାସର ନନ୍ଦୋତ୍ସବ । ପୂଜା ପରେ ରାଧା ଗୋବିନ୍ଦ ମନ୍ଦିରର ପୂଜକ ଶ୍ରୀ ଗୋବିନ୍ଦଜୀଉଙ୍କ ବିଗ୍ରହକୁ ତାଙ୍କର ଶୟନ କକ୍ଷକୁ ନେଉଥାନ୍ତି । ହଠାତ୍ ପୂଜକଙ୍କ ଗୋଡ ଖସିଗଲା । ସେ ତଳେ ପଡ଼ିଗଲେ । ଫଳରେ ଜୀଉଙ୍କର ଗୋଟିଏ ଗୋଡ଼ ଭାଙ୍ଗିଗଲା । ଏହା ଦ୍ୱାରା ଭଗ୍ନ ବିଗ୍ରହ ଆଉ ପୂଜା ପାଇବେ ନାହିଁ ବୋଲି ମତ ପ୍ରକାଶ ପାଇଲା । ଶାସ୍ତ୍ରରେ ମନା କରାଯାଇଛି ବୋଲି ନିୟମ ବାହାରିଲା । ପଣ୍ଡିତମାନେ ଶେଷକୁ ମତ ଦେଲେ ଯେ, ଏହି ଭଙ୍ଗା ବିଗ୍ରହକୁ ଗଙ୍ଗାନଦୀରେ ବିସର୍ଜନ କରି ତାଙ୍କ ସ୍ଥାନରେ ନୂଆ ବିଗ୍ରହ ପ୍ରତିଷ୍ଠା କରାଯାଉ ।

ମଥୁର ବାବୁଙ୍କ ମନ କିନ୍ତୁ ଏଥିରେ ବୁଝିଲା ନାହିଁ । ସେ ଭାବିଲେ, ଏ ବିଷୟରେ ଗଦାଧରକୁ ପଚାରିବେ । ସେ କ'ଣ କହୁଛି ତା' କଥା ଶୁଣିବେ । ତା' ପରେ ଯାଇ ଯାହା କରିବେ । ଏହି କଥା ଚିନ୍ତା କରି ସେ ଗଦାଧରକୁ ତା'ର ମତାମତ ପଚାରିଲେ ।

ଗଦାଧର ସବୁ ଶୁଣି ଟିକିଏ ରହିଯାଇ କହିଲେ - ରାଣୀ ରାସମଣିଙ୍କ ଜ୍ୱାଇଁମାନଙ୍କ ମଧ୍ୟରୁ ଯଦି କାହାରି ଗୋଡ଼ ଭାଙ୍ଗିଯାଇ ଥାଆନ୍ତା, ତେବେ ସେ କ'ଣ କରିଥାନ୍ତେ ? ସେହି ଜ୍ୱାଇଁ ବଦଳରେ ନୂଆ ଜ୍ୱାଇଁ ଆଣି ଥାଆନ୍ତେ, ନା ତା'ର ଚିକିତ୍ସାର ବ୍ୟବସ୍ଥା କରି ଭଙ୍ଗା

କଲେ । ଗଦାଧରଙ୍କୁ ମଧ ଦକ୍ଷିଣେଶ୍ୱରର କାଳୀ ମନ୍ଦିର ପରିସର ଖୁବ୍ ଭଲ ଲାଗିଲା । ମନ୍ଦିର ଚତୁଃପାର୍ଶ୍ୱର ଶାନ୍ତ ସୁନ୍ଦର ପରିବେଶ, ମନୋରମ ଉଦ୍ୟାନ ତାଙ୍କ ସାଧନା ମାର୍ଗକୁ ଉନ୍ମୁକ୍ତ କରିଥିଲା ।

ଅନ୍ୟ ପକ୍ଷରେ ଦକ୍ଷିଣେଶ୍ୱରର ବାସିନ୍ଦାମାନଙ୍କୁ ଗଦାଧରଙ୍କର ସୁନ୍ଦର ଚେହେରା, ଶାନ୍ତ ସରଳ ପ୍ରକୃତି ଖୁବ୍ ଆକୃଷ୍ଟ କରିଥିଲା । ଖୁବ୍ ଶୀଘ୍ର ଗଦାଧର ସେମାନଙ୍କର ପ୍ରିୟ ପାତ୍ର ହୋଇ ଉଠିଥିଲେ । ରାଣୀ ରାସମଣିଙ୍କ ଜାମାତା ମଥୁର ବାବୁ ତାଙ୍କୁ ସମସ୍ତଙ୍କଠାରୁ ଅଧିକ ଭଲ ପାଉଥିଲେ । ଗଦାଧରଙ୍କୁ ଦେବୀଙ୍କ ବେଶକାରୀ ଭାବେ ନିଯୁକ୍ତ କରିବାକୁ ଥରେ ସେ ଚିନ୍ତାକଲେ । ଏକଥା ସେ ରାମକୁମାରଙ୍କୁ କହିଲେ । ରାମକୁମାର ପ୍ରଥମେ ଏଥିରେ ରାଜି ହେଲେ ନାହିଁ । କାରଣ ଦେବୀଙ୍କୁ ବେଶ କରିବା ଏକ ବଡ଼ ଦାୟିତ୍ୱ । କେବଳ ଫୁଲମାଳ ବା ଚନ୍ଦନରେ ସଜାଇଲେ ହେବ ନାହିଁ, ତା' ସହିତ ବସ୍ତ୍ର ଓ ସୁନା ଅଳଙ୍କାର ମଧ ପିନ୍ଧାଇବାକୁ ପଡ଼ିବ । ଗଦାଧର ଏହି ଦାୟିତ୍ୱ ଠିକ୍ ଭାବେ ତୁଲାଇ ପାରିବେ ତ ? ମାତ୍ର ମଥୁରବାବୁ ତାଙ୍କ ନିଷ୍ପତ୍ତିରେ ଅଟଳ ରହି ଗଦାଧରଙ୍କୁ ଏହି ଦାୟିତ୍ୱ ଅର୍ପଣ କଲେ ।

ଗଦାଧରଙ୍କର ଆନନ୍ଦ ଦେଖେ କିଏ ? ସେ ଏହି ନୂତନ କାମରେ ଆଗ୍ରହର ସହିତ ଯୋଗ ଦେଲେ । ଦେବୀଙ୍କୁ ବେଶ କରାଇବାବେଳେ ସେ ସଂପୂର୍ଣ୍ଣ ଭାବେ ନିଜକୁ ଭୁଲିଯାଉଥିଲେ । ମନ ପ୍ରାଣ ଦେଇ ଅତି ନିଷ୍ଠାର ସହ ଦେବୀଙ୍କୁ ସଜାଉ ଥିଲେ । ଏହି ସମୟରେ ଦେବୀଙ୍କ ଭଜନ ଗାଇ ଗାଇ ଆତ୍ମହରା ହୋଇ ପଡୁଥିଲେ ।

## ଭଙ୍ଗା ଗୋଡ଼ ଯୋଡ଼ା ହେଲା

ଗଦାଧରଙ୍କର ଥିଲା ବିଚକ୍ଷଣ ବୁଦ୍ଧି । ଯେ କୌଣସି ଜଟିଳ ସମସ୍ୟାର ସହଜ ସମାଧାନ ସେ କରିଦେଉଥିଲେ । ତାଙ୍କର ଏହି ବୁଦ୍ଧିମତ୍ତାର ପରିଚୟ ଅନେକ ଘଟଣାରୁ ଜାଣିବାକୁ ମିଳିଥିଲା ।

ଥରକର କଥା । ସେଦିନ ଥାଏ ଭାଦ୍ରବ ମାସର ନନ୍ଦୋତ୍ସବ । ପୂଜା ପରେ ରାଧା ଗୋବିନ୍ଦ ମନ୍ଦିରର ପୂଜକ ଶ୍ରୀ ଗୋବିନ୍ଦଜୀଉଙ୍କ ବିଗ୍ରହକୁ ତାଙ୍କର ଶୟନ କକ୍ଷକୁ ନେଉଥାନ୍ତି । ହଠାତ୍ ପୂଜକଙ୍କ ଗୋଡ ଖସିଗଲା । ସେ ତଳେ ପଡ଼ିଗଲେ । ଫଳରେ ଜୀଉଙ୍କର ଗୋଟିଏ ଗୋଡ଼ ଭାଙ୍ଗିଗଲା । ଏହା ଦ୍ୱାରା ଭଗ୍ନ ବିଗ୍ରହ ଆଉ ପୂଜା ପାଇବେ ନାହିଁ ବୋଲି ମତ ପ୍ରକାଶ ପାଇଲା । ଶାସ୍ତ୍ରରେ ମନା କରାଯାଇଛି ବୋଲି ନିୟମ ବାହାରିଲା । ପଣ୍ଡିତମାନେ ଶେଷକୁ ମତ ଦେଲେ ଯେ, ଏହି ଭଙ୍ଗା ବିଗ୍ରହକୁ ଗଙ୍ଗାନଦୀରେ ବିସର୍ଜନ କରି ତାଙ୍କ ସ୍ଥାନରେ ନୂଆ ବିଗ୍ରହ ପ୍ରତିଷ୍ଠା କରାଯାଉ ।

ମଥୁର ବାବୁଙ୍କ ମନ କିନ୍ତୁ ଏଥିରେ ବୁଝିଲା ନାହିଁ । ସେ ଭାବିଲେ, ଏ ବିଷୟରେ ଗଦାଧରକୁ ପଚାରିବେ । ସେ କ'ଣ କହୁଛି ତା' କଥା ଶୁଣିବେ । ତା' ପରେ ଯାଇ ଯାହା କରିବେ । ଏହି କଥା ଚିନ୍ତା କରି ସେ ଗଦାଧରକୁ ତା'ର ମତାମତ ପଚାରିଲେ ।

ଗଦାଧର ସବୁ ଶୁଣି ଟିକିଏ ରହିଯାଇ କହିଲେ - ରାଣୀ ରାସମଣିଙ୍କ ଜ୍ୱାଇଁମାନଙ୍କ ମଧ୍ୟରୁ ଯଦି କାହାରି ଗୋଡ଼ ଭାଙ୍ଗିଯାଇ ଥାଆନ୍ତା, ତେବେ ସେ କ'ଣ କରିଥାନ୍ତେ ? ସେହି ଜ୍ୱାଇଁ ବଦଳରେ ନୂଆ ଜ୍ୱାଇଁ ଆଣି ଥାଆନ୍ତେ, ନା ତା'ର ଚିକିତ୍ସାର ବ୍ୟବସ୍ଥା କରି ଭଙ୍ଗା

ଗୋଡ଼ ଭଲ କରିଥାଆନ୍ତେ ? ଏଠି ମଧ୍ୟ ତାହା ହିଁ କରାଯାଉ । ନୂତନ ବିଗ୍ରହ ନ ଆଣି ଏହି ବିଗ୍ରହଙ୍କର ଗୋଡ଼କୁ ସଜଡ଼ା ଯାଉ ଓ ସେହି ବିଗ୍ରହଙ୍କୁ ପୂଜା କରାଯାଉ । ଏ କଥା ଶୁଣି ସମସ୍ତେ ଆନନ୍ଦିତ ହେଲେ । କେତେ ସୁନ୍ଦର ଆଉ ସହଜ ଭାବରେ ଯୁକ୍ତି କରି ସମସ୍ତଙ୍କୁ ସେ ବୁଝାଇ ଦେଲେ । ସମସ୍ତଙ୍କ ମନକୁ କଥାଟା ପାଇଲା । ଗଦାଧର ନିଜେ ବିଗ୍ରହଙ୍କ ଗୋଡ଼କୁ ଯୋଡ଼ି ଠିକ୍ କରିଦେଲେ ଓ ସେ ପୁଣି ଆଗ ଭଳି ପୂଜା ପାଇଲେ ।

ଏହି ଘଟଣା ପରେ ରାଣୀ ରାସମଣି ଗୋବିନ୍ଦଜୀଉଙ୍କ ପୂଜକକୁ କାମରୁ ବିଦାକରି ଦେଲେ ଓ ଗଦାଧରଙ୍କୁ ସେଠାରେ ପୂଜକ ଭାବରେ ପୂରା ଦାୟିତ୍ୱ ଦେଇଦେଲେ । ଏହି ସମୟଠାରୁ ଗଦାଧର ସର୍ବତ୍ର ରାମକୃଷ୍ଣ ନାମରେ ପରିଚିତ ହେଲେ । ଶୁଣାଯାଏ, ରାଣୀଙ୍କ ଜାମାତା ମଥୁର ବାବୁ ତାଙ୍କୁ ଏଇ ନୂଆ ନାଁ ଦେଇଥିଲେ ।

ଗଦାଧର କାଳୀ ମନ୍ଦିରରୁ ଚାଲି ଆସିବା ପରେ ରାମକୁମାରଙ୍କୁ ସହଯୋଗ କରିବା ପାଇଁ ତାଙ୍କ ପିଉସୀ ପୁଅ ଭାଇ ହୃଦୟକୁ ଦାୟିତ୍ୱ ଦିଆଯାଇଥିଲା । ମାତ୍ର ରାମକୁମାରଙ୍କ ବୟସ ଅଧିକ ହେବାରୁ ସେ ଦୁର୍ବଳ ହୋଇପଡ଼ିଲେ ଓ କାଳୀମନ୍ଦିରର ସମସ୍ତ ଦାୟିତ୍ୱ ରାମକୃଷ୍ଣଙ୍କୁ ଦେଇ ଗାଁକୁ ଫେରିଯିବାକୁ ଇଚ୍ଛା ପ୍ରକାଶ କଲେ । କିନ୍ତୁ ଏହା ସହଜ କଥା ନଥିଲା । କାରଣ ମହାମାୟା ଶକ୍ତିଙ୍କୁ ଆରାଧନା କରିବା ଥିଲା ଏକ କଠିନ କାର୍ଯ୍ୟ । ଏଥିପାଇଁ ଠିକ୍ ଭାବେ ଦୀକ୍ଷା ନେବା ଦରକାର । ରାମକୃଷ୍ଣ ପୂର୍ବରୁ କୌଣସି ଦୀକ୍ଷା ଗ୍ରହଣ କରି ନଥିଲେ । ତେଣୁ ରାମକୃଷ୍ଣଙ୍କୁ ପ୍ରଥମେ କଲିକତାର ବିଶିଷ୍ଟ ଶକ୍ତି ସାଧକ କେନାରାମ

ଭଟ୍ଟାଚାର୍ଯ୍ୟଙ୍କଠାରୁ ଦୀକ୍ଷା ଗ୍ରହଣ କରିବାକୁ ପଡ଼ିଲା । ତା'ପରେ କାଳୀ ମନ୍ଦିରର ପୂଜକ ଭାବେ ସେ ସଂପୂର୍ଣ୍ଣ ଦାୟିତ୍ୱ ଗ୍ରହଣ କଲେ । ତାଙ୍କ ପିଉସୀ ପୁଅ ଭାଇ ହୃଦୟ ରାଧାଗୋବିନ୍ଦ ଜୀଉଙ୍କ ପୂଜା ଭାର ଗ୍ରହଣ କଲେ ।

## ମାଆ ଦେଲେ ଦେଖା

ରାମକୁମାର କଲିକତାରୁ ଫେରିଯିବାର ଅଳ୍ପଦିନ ପରେ ମୃତ୍ୟୁ ବରଣ କରିଥିଲେ । ଏହି ଘଟଣାରେ ରାମକୃଷ୍ଣ ଖୁବ୍ ଆଘାତ ପାଇଲେ । କାରଣ ପିତାଙ୍କ ମୃତ୍ୟୁ ପରେ ବଡ଼ ଭାଇ ରାମକୁମାର ହିଁ ପିତାଙ୍କ ଅଭାବ ପୂରଣ କରିଥିଲେ । ତାଙ୍କ ମୃତ୍ୟୁ ପରେ ସେ ଏକୁଟିଆ ହୋଇଯାଇ ଥିଲେ । ତାଙ୍କ ମନରେ ସାଂସାରିକ ମୋହମାୟା ପ୍ରତି ବିତୃଷ୍ଣା ଭାବ ଜାତ ହୋଇଥିଲା । ସେ ମନ ପ୍ରାଣ ଦେଇ ଜଗତର ମାତା ମା' କାଳୀଙ୍କ ପୂଜାରେ ନିଜକୁ ହଜାଇ ଦେଇଥିଲେ । ତାଙ୍କୁ ପ୍ରତ୍ୟକ୍ଷ ଦର୍ଶନ କରିବା ପାଇଁ ବ୍ୟାକୁଳ ହୋଇ ଉଠିଥିଲେ । ମାଆଙ୍କର ପୂଜା ଆରାଧନା କରିବା ସମୟରେ ସେ ଭକ୍ତିରେ ପୂରା ଭୋଳ ହୋଇଯାଉଥିଲେ । ତାଙ୍କୁ ଲାଗୁଥିଲା, ସତେ ଯେପରି ଜୀବନ୍ତ ପ୍ରତିମା ତାଙ୍କ ସମ୍ମୁଖରେ ଉଭା ହୋଇଛନ୍ତି । ତାଙ୍କ ସହିତ କଥାବାର୍ତ୍ତା କରୁଛନ୍ତି । ତାଙ୍କୁ ସାନ୍ତ୍ୱନା ଦେଉଛନ୍ତି । ଆଉ ତାଙ୍କର ଅନ୍ନ ସେବନ କରୁଛନ୍ତି । ଏହି ଦିବ୍ୟ ଅନୁଭୂତି ଯୋଗୁଁ ସେତେବେଳେ ତାଙ୍କର ବାହ୍ୟ ଜ୍ଞାନ ରହୁ ନଥିଲା । ସେ ସଂପୂର୍ଣ୍ଣ ରୂପେ ନିଜକୁ ଭୁଲି ଯାଉଥିଲେ । ଫଳରେ ସେ କେତେବେଳେ ହସୁଥିଲେ, କେତେବେଳେ କାନ୍ଦୁଥିଲେ, ପୁଣି କେତେବେଳେ ଆନନ୍ଦରେ ନାଚି ଉଠୁଥିଲେ ତ କେତେବେଳେ ଶିଶୁ ଭଳି ମା' କାଳୀଙ୍କ ନିକଟରେ ଅଭିମାନ କରି ଅଳି କରୁଥିଲେ ।

ରାମକୃଷ୍ଣଙ୍କର ଏହି ଆବେଗମୟ ଦୃଶ୍ୟକୁ ଲୋକମାନେ ବୁଝିପାରୁ ନଥିଲେ । ସେ ପାଗଳ ହୋଇଗଲେଣି ବୋଲି ସେମାନେ ଭାବୁଥିଲେ ଓ ମନ୍ଦିରର କର୍ମକର୍ତ୍ତାଙ୍କୁ ଏ ବିଷୟରେ ସୂଚନା ଦେଇଥିଲେ । ମଥୁର ବାବୁ ଯିଏ କି ରାମକୃଷ୍ଣଙ୍କୁ ଖୁବ୍ ଭଲ ପାଉଥିଲେ, ସେ ଏକଥା ଶୁଣିଲେ । ଦିନେ ରାମକୃଷ୍ଣଙ୍କୁ ଦେଖିବା ପାଇଁ ଅଚାନକ ଭାବରେ ପୂଜା ସମୟରେ ସେ ଆସି ମନ୍ଦିରରେ ପହଞ୍ଚିଲେ । ରାମକୃଷ୍ଣ ସେତେବେଳକୁ ଦେବୀଙ୍କ ଆରାଧନାରେ ତନ୍ମୟ ହୋଇଯାଇଥିଲେ । ବାହାରେ କ'ଣ ଘଟୁଛି ସେଥିପ୍ରତି ତାଙ୍କର ଦୃଷ୍ଟି ନ ଥାଏ । ତାଙ୍କ ଆଖିରୁ ଲୁହ ଧାର ଝର ଝର ହୋଇ ବହିଯାଉଥାଏ । ମାଆ ପାଖରେ ପୁଅ ନାନା ଅଳି କଲା ପରି ତାଙ୍କର ହାବଭାବ ହେଉଥାଏ ।

ଏ ଦୃଶ୍ୟ ଦେଖି ମଥୁର ବାବୁ ଖୁବ୍ ଉଦ୍‌ବେଳିତ ହୋଇଯାଇଥିଲେ । ତାଙ୍କ ମନ ଓ ହୃଦୟ ଆନନ୍ଦରେ ପୂର୍ଣ୍ଣ ହୋଇଯାଇଥିଲା । ସେ ମନେ ମନେ ଭାବିଥିଲେ, ରାମକୃଷ୍ଣ ନିଶ୍ଚୟ ଦେବୀଙ୍କ କୃପା ଲାଭ କରିଛନ୍ତି । ସେଇଥିପାଇଁ ତ ଏତେ ଭକ୍ତିରେ ଦେବୀଙ୍କୁ ପୂଜା କରୁଛନ୍ତି । ସାଧାରଣ ଲୋକେ ବା ତାଙ୍କୁ ବୁଝିବେ କିପରି ? ତେଣୁ ତାଙ୍କୁ ପାଗଳ ବୋଲି ଭାବୁଛନ୍ତି । ଠିକ୍ ଏମିତି ତ ଦେବୀଙ୍କ ପୂଜା ହେବା କଥା । ମନେ ମନେ ଖୁସି ହୋଇ ସେ ଆଉ ରାମକୃଷ୍ଣଙ୍କୁ କିଛି ନ କହି ଫେରିଯାଇଥିଲେ ।

ଧୀରେ ଧୀରେ ରାମକୃଷ୍ଣଙ୍କ ମନ ଦେବୀଙ୍କୁ ଦର୍ଶନ କରିବା ଲାଗି ବ୍ୟାକୁଳ ହୋଇଉଠିଲା । ପ୍ରବଳ ଇଚ୍ଛା ଶକ୍ତି ବଢ଼ିବାକୁ ଲାଗିଲା । ଖାଇବା, ପିଇବା, ଶୋଇବା ଆଦି ସବୁ କାର୍ଯ୍ୟକୁ ସେ ଭୁଲିଗଲେ । କେବଳ ଦେବୀଙ୍କର ଧ୍ୟାନରେ ବୁଡ଼ି ରହିଲେ । ଅତି ବିକଳ ଭାବରେ ଦେବୀଙ୍କ

ନିକଟରେ ପ୍ରାର୍ଥନା କଲେ - ମାଆ ! ତୁମେ କେଉଁଠାରେ ଅଛ ? ମୋତେ ଥରେ ମାତ୍ର ଦେଖା ଦିଅ ମା' । ମୋର ଧନ - ଜନ - ଐଶ୍ୱର୍ଯ୍ୟ କିଛି ଲୋଡ଼ା ନାହିଁ । ତୁମର ଦର୍ଶନ ହିଁ ମୋର ଇଚ୍ଛା । ଏହିପରି କାତର କଣ୍ଠରେ ଦେବୀଙ୍କୁ ଡାକିବାକୁ ଲାଗିଲେ ।



ଦିନେ ଅଧୀର ହୋଇ କହିଲେ - ନା, ଏ ଜୀବନ ରଖି ଆଉ ଲାଭ ନାହିଁ । ମାଆ ମୋତେ ତ ଦର୍ଶନ ହେଉନାହାନ୍ତି । ତେଣୁ ଏ ଜୀବନ ହାରି ଦେବି । ଏହା ଭାବି ମନ୍ଦିର କାନ୍ଥରେ ଝୁଲୁଥିବା ଖଣ୍ଡାକୁ ଟାଣି ଆଣିଲେ । ଖଣ୍ଡାରେ ନିଜ ଜୀବନକୁ ଶେଷ କରିବା ପାଇଁ ବସିଲାବେଳେ ଜଗତ ଜନନୀ ମାଆ କାଳୀ ତାଙ୍କୁ ଦର୍ଶନ ଦେଲେ । କାରଣ ତାଙ୍କ ଭକ୍ତିରେ କୌଣସି ସ୍ୱାର୍ଥପରତା ନଥିଲା । ରାମକୃଷ୍ଣ ନିଜ ସମ୍ମୁଖରେ ସ୍ୱୟଂ ମାଆ କାଳୀଙ୍କୁ ଦର୍ଶନ କରି ଅଭିଭୂତ ହୋଇ ପଡ଼ିଲେ । ତାଙ୍କ ଶରୀର ରୋମାଞ୍ଚିତ ହୋଇଗଲା ଓ ସେ ଚେତାଶୂନ୍ୟ ହୋଇ ପଡ଼ିଗଲେ । କିଛି ସମୟ ପରେ ଚେତା ଫେରି ଆସିବାରୁ ସେ

ଦେବୀଙ୍କୁ ମର୍ମେ ମର୍ମେ ଅନୁଭବ କଲେ । ଏତେଦିନେ ତାଙ୍କର ଇଚ୍ଛା ପୂରଣ ହେଲା । ସାଧନା ତାଙ୍କର ସଫଳ ହେଲା । ସେ ଖୁସିରେ ଆତ୍ମହରା ହୋଇ ପଡ଼ିଲେ ।

ରାମକୃଷ୍ଣ ପ୍ରକୃତରେ ଥିଲେ ଦେବୀଙ୍କର ଜଣେ ଏକନିଷ୍ଠ ଭକ୍ତ । ତାଙ୍କର ଅତ୍ୟଧିକ ଆନ୍ତରିକତା ଓ ଭକ୍ତି ଭାବ ଲୋକମାନଙ୍କ ଦୃଷ୍ଟିରେ ପାଗଳାମିର ରୂପ ନେଇଥିଲା । ଦିନେ କାମାରପୁକୁର ଗ୍ରାମରେ ଚନ୍ଦ୍ରାଦେବୀ ମଧ୍ୟ ଶୁଣିବାକୁ ପାଇଲେ ଯେ, ତାଙ୍କର ଅତି ଆଦରର ପୁଅ ପାଗଳ ହୋଇଯାଇଛି । ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିଛି । ଏ ସମ୍ବାଦରେ ମାଆ ମନ ତାଙ୍କର ବିଚଳିତ ହୋଇ ପଡ଼ିଲା । ସେ ତାଙ୍କର ଦ୍ୱିତୀୟ ପୁତ୍ର ରାମେଶ୍ୱରଙ୍କୁ କଲିକତାର ଦକ୍ଷିଣେଶ୍ୱରକୁ ପଠାଇଲେ । ତାଙ୍କୁ କହିଲେ - ରାମକୃଷ୍ଣକୁ ସାଙ୍ଗରେ ଧରି ଗାଁକୁ ନେଇ ଆସିବୁ ।

ରାମକୃଷ୍ଣ ମାଆଙ୍କ ଡାକରାପାଇ ଓ ଭାଇ ରାମେଶ୍ୱରଙ୍କ ବ୍ୟସ୍ତତା ଦେଖି କାମାରପୁକୁର ଚାଲିଆସିଲେ । କିଛି ଦିନ ଗାଁରେ ମାଆ ଓ ଭାଇଙ୍କ ନିକଟରେ ରହିଲେ । ମା' ମଧ୍ୟ ପୁଅକୁ ପାଇ ଅତି ଆନନ୍ଦିତ ହେଲେ । ମାତ୍ର ରାମକୃଷ୍ଣଙ୍କ ମନରେ କୌଣସି ପରିବର୍ତ୍ତନ ଦେଖାଦେଇ ନଥିଲା । ସେ ପୂର୍ବ ପରି ଧ୍ୟାନ ଓ ତପସ୍ୟାରେ ମଗ୍ନ ରହୁଥିଲେ । ସାଂସାରିକ ସୁଖ ପ୍ରତି ତାଙ୍କ ମନରେ ଆଦୌ ଆସକ୍ତି ନ ଥିଲା । ଦକ୍ଷିଣେଶ୍ୱର କାଳୀ ମନ୍ଦିରରେ ସେ ଯେପରି ଜପ, ତପ କରୁଥିଲେ, ଗାଁରେ ଥିବା ଶ୍ମଶାନକୁ ଯାଇ ସେ ସେହିପରି ଧ୍ୟାନ କରୁଥିଲେ । ତାଙ୍କ ଆଚରଣରେ କୌଣସି ପରିବର୍ତ୍ତନ ନ ଘଟିବାରୁ ମା' ଓ ଭାଇ ଅତ୍ୟନ୍ତ ଚିନ୍ତିତ ହୋଇ ପଡ଼ିଲେ । ସେ ଏତେ ଦୂରରୁ ପୁଅକୁ ଡକାଇ ଆଣିଥିଲେ,

ତା'ର ପାଗଳାମି ଦୂର କରିବା ପାଇଁ । ମାତ୍ର ପୁଅ ମନରେ କୌଣସି ପରିବର୍ତ୍ତନ ଲକ୍ଷ୍ୟ ନ କରି ସମସ୍ତେ ବିବ୍ରତ ହୋଇ ପଡ଼ିଲେ ।

## ମାୟା ମୋହ ଛାଡି ମହାଭାବ

ରାମକୃଷ୍ଣଙ୍କର ବୟସ ସେତେବେଳକୁ ୨୩ ବର୍ଷ । ମା' ଚନ୍ଦ୍ରାଦେବୀ ଭାବିଲେ, ରାମକୃଷ୍ଣଙ୍କୁ ବିବାହ କରାଇଦେଲେ ହୁଏତ ତାଙ୍କ ମନରେ ପରିବର୍ତ୍ତନ ଆସିପାରେ । ସେ ସଂସାରର ମୋହମାୟା ପ୍ରତି ଆସକ୍ତ ହୋଇପାରନ୍ତି । ଏ କଥା ଭାବି ସେ ପୁଅ ପାଇଁ ଉପଯୁକ୍ତ କନ୍ୟା ଖୋଜିବାକୁ ଲାଗିଲେ । ବନ୍ଧୁବାନ୍ଧବମାନେ ମଧ୍ୟ କାମରେ ଲାଗି ପଡ଼ିଲେ । ମାତ୍ର ଭଲ କନ୍ୟାଟିଏ ପାଇଲେ ନାହିଁ । ଏଥିରେ ତାଙ୍କ ମାଆ ଦୁଃଖରେ ଭାଙ୍ଗି ପଡ଼ିଲେ । ରାମକୃଷ୍ଣ ଏ କଥା ଜାଣିପାରି ଦିନେ ମାଆଙ୍କୁ ଡାକି କହିଲେ - "ମୋ ପାଇଁ ଏଣେ ତେଣେ କନ୍ୟା ଖୋଜିବାର ଆବଶ୍ୟକତା ନାହିଁ । ବରଂ ତୁମେମାନେ ଜୟରାମବାଟି ଗାଁକୁ ଯାଅ । ସେହି ଗାଁରେ ରାମଚନ୍ଦ୍ର ମୁଖୋପାଧ୍ୟାୟଙ୍କର ଝିଅଟିଏ ଅଛି । ସେ ହିଁ ମୋ ପାଇଁ ଉପଯୁକ୍ତ କନ୍ୟା ।"

ସମସ୍ତେ ରାମକୃଷ୍ଣଙ୍କ କଥାନୁସାରେ ଜୟରାମବାଟି ଗାଁକୁ ଗଲେ । ସେଠାରେ ରାମଚନ୍ଦ୍ର ମୁଖୋପାଧ୍ୟାୟଙ୍କ ପାଞ୍ଚ ବର୍ଷର ଝିଅକୁ ଦେଖିଲେ । ତା' ନାଁ ଅନ୍ନପୂର୍ଣ୍ଣା । ସେତେବେଳେ ପିଲା କନିଆ ବାହା ହେବା ବିଧି ଥିଲା । ଏହାପରେ ରାମକୃଷ୍ଣଙ୍କ ଇଚ୍ଛାନୁସାରେ ସେହି ପାଞ୍ଚ ବର୍ଷର ଝିଅ ସହିତ ତାଙ୍କର ବିବାହ ସଂପନ୍ନ ହେଲା । ମା', ଭାଇ ଓ ବନ୍ଧୁବାନ୍ଧବ ସମସ୍ତେ ଖୁସି ହେଲେ । ଏଥର ରାମକୃଷ୍ଣଙ୍କ ମତି ଗତିରେ ପରିବର୍ତ୍ତନ ହେବ ବୋଲି ମନେ କଲେ । ମାତ୍ର ରାମକୃଷ୍ଣଙ୍କ ମନ ସଂସାର ପ୍ରତି

ଥିଲା ଅନାସକ୍ତ । ଏହାପରେ ସେ କାମାରପୁକୁରରେ ପ୍ରାୟ ଦେଢ଼ ବର୍ଷ ରହିବା ପରେ ଦକ୍ଷିଣେଶ୍ୱରକୁ ଫେରିଯାଇଥିଲେ ।

ରାମକୃଷ୍ଣ ଦକ୍ଷିଣେଶ୍ୱରରେ ପହଞ୍ଚିବା ପରେ ପୁଣି ଭଗବତ୍ ପ୍ରେମରେ ଲୀନ ହୋଇଗଲେ । ପୂର୍ବ ପରି ଭାବ ବିହ୍ୱଳ ହୋଇ ଉଠିଲେ । ଲୋକମାନେ ତାଙ୍କୁ ପୁଣି ଥରେ ପାଗଳ ହୋଇଗଲେ ବୋଲି ପ୍ରଚାର କଲେ । ମଥୁରବାବୁଙ୍କ କାନରେ ଏକଥା ପଡ଼ିଲା । ତାଙ୍କୁ ନେଇ ସେ କଲିକତାର ଜଣେ କବିରାଜ ଶିବ ପ୍ରସାଦ ସେନ୍‌ଙ୍କ ନିକଟରେ ପହଞ୍ଚିଲେ । କବିରାଜଙ୍କୁ ତାଙ୍କର ଭଲ ଭାବେ ଚିକିତ୍ସା କରିବା ନିମନ୍ତେ କହିଲେ ।

କବିରାଜ ତନ୍ନ ତନ୍ନ କରି ରାମକୃଷ୍ଣଙ୍କୁ ପରୀକ୍ଷା କଲେ । ମାତ୍ର କୌଣସି ପାଗଳାମୀର ପ୍ରାଥମିକ ଲକ୍ଷଣ ସେ ଦେଖିଲେ ନାହିଁ । ସେ ମଥୁର ବାବୁଙ୍କୁ କହିଲେ - "ରାମ କୃଷ୍ଣ ସଂପୂର୍ଣ୍ଣ ସୁସ୍ଥ । ତାଙ୍କ ଦେହରେ କୌଣସି ରୋଗ ନାହିଁ । ସେ ହେଉଛନ୍ତି ଜଣେ ପ୍ରକୃତ ସାଧକ । କଠୋର ସାଧନା ଯୋଗୁଁ ତାଙ୍କ ଚାଲିଚଳଣିରେ ଭିନ୍ନ ଭିନ୍ନ ଲକ୍ଷଣ ପ୍ରକାଶ ପାଉଛି । ଏଥିରେ ଚିନ୍ତିତ ହେବା ଦରକାର ନାହିଁ । ଏହା କୌଣସି ଔଷଧ ଦ୍ୱାରା ଭଲ ହେବ ନାହିଁ ।

ଏହାପରେ ରାମକୃଷ୍ଣଙ୍କର ଭଗବଦ୍ ପ୍ରେମର ଖବର ଚାରିଆଡ଼େ ପ୍ରଚାରିତ ହୋଇଗଲା । ଯେଉଁମାନେ ତାଙ୍କୁ ପାଗଳ ବୋଲି କହୁଥିଲେ, ସେମାନେ ଅନୁତାପ କଲେ ଓ ରାମକୃଷ୍ଣଙ୍କୁ ଭକ୍ତି କଲେ । ଧୀରେ ଧୀରେ ରାମକୃଷ୍ଣ ଅଧିକରୁ ଅଧିକ କଠୋର ସାଧନା କରିବାକୁ ଲାଗିଲେ । ସାଧନା କଲାବେଳେ ସେ ସଂପୂର୍ଣ୍ଣ ଉଲଗ୍ନ ହୋଇ

ଯାଉଥିଲେ । ଦେହରେ ପଇତା ମଧ୍ୟ ରଖୁ ନଥିଲେ । ସେତେବେଳେ ତାଙ୍କର ବାହ୍ୟ ଜ୍ଞାନ ରହୁ ନଥିଲା । ସେ ମହାଭାବରେ ଲୀନ ହୋଇଯାଉଥିଲେ । ତାଙ୍କ ମତରେ ଧ୍ୟାନ କରିବାକୁ ହେଲେ ସମସ୍ତ ପ୍ରକାର ଲଜ୍ଜା, କୁଳ, ଶୀଳ, ଭୟ ଆଦିକୁ ତ୍ୟାଗ କରିବାକୁ ପଡ଼ିବ । ସମସ୍ତ ପାପ ବନ୍ଧନରୁ ମୁକ୍ତ ହେବାକୁ ପଡ଼ିବ । ତେବେ ଯାଇ ସାଧନାରେ ସିଦ୍ଧି ଲାଭ କରିପାରିବ ।

ରାମକୃଷ୍ଣ ଦୀର୍ଘ ଛଅ ବର୍ଷ କାଳ ଏହିପରି କଠୋର ସାଧନା କରିଥିଲେ । ଏହାପରେ ତାଙ୍କ ମନରେ ସଂସାର ପ୍ରତି ବୈରାଗ୍ୟ ଭାବ ଜାତ ହୋଇଥିଲା । ସେ ସଂସାରର ସମସ୍ତ ମୋହ ମାୟାଠାରୁ ଦୂରରେ ରହିଥିଲେ । ଧନ ସଂପତ୍ତି ପ୍ରତି ତାଙ୍କ ମନରେ ଆଦୌ ଲୋଭ ନଥିଲା । ସେ କହୁଥିଲେ - ପ୍ରକୃତ ମଣିଷ ପାଇଁ ଅର୍ଥ ହେଉଛି ମୂଲ୍ୟହୀନ । ସେ ନିଜେ ବି ବିପୁଳ ସଂପତ୍ତିକୁ ଗ୍ରହଣ କରି ନଥିଲେ । ଯେତେବେଳେ ରାଣୀ ରାସମଣିଙ୍କର ୧୮୬୧ ମସିହାରେ ପରଲୋକ ଘଟିଲା, ସେତେବେଳେ ସମସ୍ତ ସଂପତ୍ତିର ଅଧିକାରୀ ହୋଇଥିଲେ ମଥୁର ବାବୁ । ସେ ରାମକୃଷ୍ଣଙ୍କୁ ସେହି ବିପୁଳ ସଂପତ୍ତିରୁ କିଛି ଅଂଶ ଦାନ ଦେବା ପାଇଁ ପ୍ରସ୍ତାବ ଦେଲେ । ମାତ୍ର ରାମକୃଷ୍ଣ ଏହି ପ୍ରସ୍ତାବରେ ରାଜି ହେଲେ ନାହିଁ । ସେ କହିଲେ - "ମୁଁ ଆଉ ସଂସାର ବନ୍ଧନରେ ବାନ୍ଧି ହେବାକୁ ଚାହୁଁ ନାହିଁ । ମୋର ଏ ଧନ ସଂପତ୍ତି କ'ଣ ହେବ ? ମୁଁ ଏହାକୁ ନେଇ କ'ଣ କରିବି ?" ଏକଥା ଶୁଣି ମଥୁର ବାବୁ ଆଶ୍ଚର୍ଯ୍ୟ ହୋଇଥିଲେ । ଏହାପରେ ସେ ରାମକୃଷ୍ଣଙ୍କର ଆହୁରି ନିକଟତର ହୋଇଯାଇଥିଲେ ।

# ପରମ ପୁରୁଷ ପରମହଂସ

ଦକ୍ଷିଣେଶ୍ୱର କାଳୀମନ୍ଦିରର ପଶ୍ଚିମ ପଟେ ଗଙ୍ଗା ନଦୀ କୂଳରେ ଥିଲା ଏକ ସୁନ୍ଦର ଫୁଲ ବଗିଚା । ରାମକୃଷ୍ଣ ସକାଳୁ ଉଠି ସେହି ବଗିଚାରୁ ନାନା ପ୍ରକାର ଫୁଲ ତୋଳୁଥିଲେ । ସେଥିରେ ମାଳା ତିଆରି କରୁଥିଲେ । ସେହି ମାଳାକୁ ନେଇ ସେ ମା' ଜଗଦମ୍ବାକୁ ପିନ୍ଧାଇ ଦେଉଥିଲେ । ଏହା ଥିଲା ତାଙ୍କର ନିତି ଦିନର କାମ ।

ଦିନେ ସେ ସକାଳୁ ଉଠି ବଗିଚାରେ ଫୁଲ ତୋଳୁଥାନ୍ତି । ଏତିକିବେଳେ ଗଙ୍ଗାନଦୀରେ ଗୋଟିଏ ଡଙ୍ଗାରେ ଜଣେ ସନ୍ନ୍ୟାସିନୀ ଆସି ସେହି ବଗିଚା ନିକଟରେ ଓହ୍ଲାଇଲେ । ସେ ଗେରୁଆ ବସ୍ତ୍ର ପିନ୍ଧିଥିଲେ । ତାଙ୍କ ହାତରେ କେତେଖଣ୍ଡ ବହିଥିଲା । ସେ ଥିଲେ ଜଣେ ଭୈରବୀ ବ୍ରାହ୍ମଣୀ ଓ ତନ୍ତ୍ର ସାଧିକା । ବୈଷ୍ଣବ ଶାସ୍ତ୍ରରେ ମଧ୍ୟ ସେ ଖୁବ୍ ଜ୍ଞାନ ଅର୍ଜନ କରିଥିଲେ । ତାଙ୍କର ନାମ ହେଉଛି ଯୋଗେଶ୍ୱରୀ । ସେ ସିଧା ରାମକୃଷ୍ଣଙ୍କ ନିକଟକୁ ଆସିଲେ । ତାଙ୍କ ପାଖରେ ପହଞ୍ଚି ଭାବ ବିହ୍ୱଳ ହୋଇ କହିଲେ- "ମୁଁ ତୁମ ବିଷୟରେ ଶୁଣିଥିଲି । ତୁମେ ଏହି ଗଙ୍ଗାନଦୀ କୂଳରେ ରହୁଛ ବୋଲି ଜାଣି ତୁମକୁ ଖୋଜି ବୁଲୁଛି । ମା' ଜଗଦମ୍ବା ମୋତେ କହିଥିଲେ ତୁମ ସାଙ୍ଗରେ ଦେଖା କରିବା ପାଇଁ । ଯାହା ହେଉ, ଆଜି ତୁମକୁ ମୁଁ ଦେଖିଲି ।" ଏହା କହି ସେ ନିଜ ପରିଚୟ ରାମକୃଷ୍ଣଙ୍କୁ ଦେଇଥିଲେ ।

ରାମକୃଷ୍ଣ ଭୈରବୀଙ୍କ ପରିଚୟ ପାଇ ଅତ୍ୟନ୍ତ ଆନନ୍ଦିତ ହେଲେ । ଭୈରବୀଙ୍କ ଆଗରେ ନିଜର ଆଧ୍ୟାତ୍ମିକ ଅନୁଭୂତି ସବୁ କହିଗଲେ । ଭୈରବୀ ଦେଖିଲେ, ଜଣେ ସରଳ ଶିଶୁଭଳି ରାମକୃଷ୍ଣ ନିଜର

ଅସାଧାରଣ ଦିବ୍ୟାନୁଭୂତିକୁ ପ୍ରକାଶ କରୁଛନ୍ତି । ସେ ଆନନ୍ଦରେ ଅଭିଭୂତ ହୋଇଗଲେ । ପୂର୍ବରୁ ଏପରି ଆଧ୍ୟାତ୍ମିକ ପ୍ରତିଭାଧାରୀ ବ୍ୟକ୍ତିଙ୍କୁ ସେ ଭେଟି ନ ଥିଲେ । ତେଣୁ ରାମକୃଷ୍ଣଙ୍କ ଉପରେ ସେ ଖୁବ୍ ସନ୍ତୁଷ୍ଟ ହୋଇଥିଲେ ଓ ଦକ୍ଷିଣେଶ୍ୱରରେ କିଛି ଦିନ ରହିଥିଲେ । ସେହି ସମୟ ମଧ୍ୟରେ ସେ ରାମକୃଷ୍ଣଙ୍କ ସହିତ ଦେବାଦେବୀଙ୍କ ଉପରେ ନାନା ଆଲୋଚନା କରୁଥିଲେ । ରାମକୃଷ୍ଣ ଏହି ଭଗବଦ୍ ଆଲୋଚନା ଭିତରେ ଅପୂର୍ବ ମହାଭାବରେ ନିଜକୁ ହଜାଇ ଦେଉଥିଲେ । ଭଗବାନଙ୍କ କଥା କହିବା ମାତ୍ରେ ଓ କୀର୍ତ୍ତନ ଶୁଣିବା ମାତ୍ରେ ତାଙ୍କର ପ୍ରାଣ ତରଳି ଯାଉଥିଲା । ସେ ସେହିଠାରେ ଭାବ-ବିଭୋର ହୋଇ ଢଳିପଡୁଥିଲେ ।



ଦିନେ ରାମକୃଷ୍ଣ ଭୈରବୀଙ୍କୁ କହିଲେ - "ମୋ ଶରୀରରେ ଅସହ୍ୟ ଯନ୍ତ୍ରଣା ମୁଁ ଅନୁଭବ କରୁଛି । ସୂର୍ଯ୍ୟୋଦୟ ହେବା ସଙ୍ଗେ ସଙ୍ଗେ ମୋ ଛାତି ପିଠି ସବୁ ଜଳିଲା ପରି ଲାଗୁଛି । କେତେ ପ୍ରକାର ଚିକିତ୍ସା କଲିଣି ।

ହେଲେ ଲାଭକିଛି ହେଉ ନାହିଁ । ତୁମେ କୁହ, ମୁଁ ଏ ଯନ୍ତ୍ରଣାରୁ କିପରି ରକ୍ଷା ପାଇବି ?"

ଭୈରବୀ ରାମକୃଷ୍ଣଙ୍କ କଥା ଶୁଣି ହସିଥିଲେ । ତାଙ୍କର ମନେ ହୋଇଥିଲା - ପ୍ରକୃତରେ ଏହା ରାମକୃଷ୍ଣଙ୍କର ଦେହର ଦାହ ନୁହେଁ, ଏହା ହେଉଛି ତାଙ୍କର ମର୍ମଦାହ । ଈଶ୍ୱର - ବିରହର ଯନ୍ତ୍ରଣା । ଏହି ଭଳି ଦିନେ ଶ୍ରୀରାଧାଙ୍କର ଓ ଶ୍ରୀଚୈତନ୍ୟଙ୍କର ଦେହରେ ଦହନ ଜ୍ୱାଳା ସୃଷ୍ଟି ହୋଇଥିଲା । ଆଜି ରାମକୃଷ୍ଣଙ୍କର ଏ ଦାହ ହେଉଛି । ସେ ନିଶ୍ଚୟ ଜଣେ ଅସାଧାରଣ ସାଧକ ।

ରାମକୃଷ୍ଣଙ୍କ ଶରୀର ଭିତରେ କିଏ ବାସ କରୁଛି ତାହା ଜାଣିବାକୁ ଆଉ ଭୈରବୀଙ୍କୁ ବେଶି ଡେରି ଲାଗି ନଥିଲା । ସେ କହିଥିଲେ - ମୁଁ ଏହାର ପ୍ରତିଷେଧର ଉପାୟ ଜାଣେ । ଏହି ଯନ୍ତ୍ରଣା ଅତି ସହଜରେ ଭଲ ହୋଇଯିବ । ତୁମେ ଦେହରେ ଚନ୍ଦନ ଲେପନ କର ଓ ଗଳାରେ ସୁବାସିବ ଫୁଲର ମାଳା ପିନ୍ଧ । ଦେଖିବ, ତୁମ ଦେହର ଜ୍ୱାଳା ଖୁବ୍ ଶୀଘ୍ର ଉପଶମ ହୋଇଯିବ ।

ରାମକୃଷ୍ଣ ଭୈରବୀଙ୍କ କଥାନୁସାରେ ଦେହରେ ଚନ୍ଦନ ବୋଳି ହୋଇଥିଲେ ଓ ସୁବାସିତ ମାଳା ପିନ୍ଧିଥିଲେ । ଏପରି କରିବାର ମାତ୍ର ତିନିଦିନ ଭିତରେ ରାମକୃଷ୍ଣଙ୍କ ଯନ୍ତ୍ରଣା କମିଗଲା । ଭୈରବୀ ଠିକ୍‌ଭାବରେ ଜାଣିଲେ ଯେ, ରାମକୃଷ୍ଣ ବି ଶ୍ରୀ ଚୈତନ୍ୟଙ୍କ ପରି ଜଣେ ଅବତାର ପୁରୁଷ । ସେ ହିଁ ପ୍ରକୃତରେ ଜଣେ ପରମହଂସ । ଏଥି ନିମନ୍ତେ ସେ ମଥୁର ବାବୁଙ୍କ ସହାୟତାରେ ଏକ ପଣ୍ଡିତ ସଭା ଡକାଇଥିଲେ । ଏହି ସଭାରେ ବହୁ ବିଶିଷ୍ଟ ପଣ୍ଡିତ ଓ ତନ୍ତ୍ର ସାଧକମାନେ ଯୋଗ

ଦେଇଥିଲେ । ଏମାନଙ୍କ ମଧ୍ୟରେ ସେତେବେଳର ବିଶିଷ୍ଟ ବିଷ୍ଣୁ ଉପାସକ ବୈଷ୍ଣବ ଚରଣ ଓ ମହାନ୍ ତାନ୍ତ୍ରିକ ଗୌରୀକାନ୍ତ ମଧ୍ୟ ଉପସ୍ଥିତ ଥିଲେ । ରାମକୃଷ୍ଣଙ୍କଠାରେ ଐଶ୍ୱରିକ ଗୁଣମାନ ଲକ୍ଷ୍ୟ କରି ସେମାନେ ତାଙ୍କୁ ଈଶ୍ୱରଙ୍କ ଅବତାର ପରମହଂସ ବୋଲି ସ୍ୱୀକାର କରିଥିଲେ ।

ଏହିପରି ପୂଜକ ମହାପୁରୁଷ ରାମକୃଷ୍ଣ ପୂଜ୍ୟ ପରମହଂସ ଭାବରେ ପରିଚିତ ହୋଇଥିଲେ ।

## ତନ୍ତ୍ର ସାଧନା, ବେଦାନ୍ତ ଶିକ୍ଷା

ଭୈରବୀ ଯୋଗେଶ୍ୱରୀ ବହୁ ତନ୍ତ୍ର ସାଧନାରେ ସିଦ୍ଧି ଲାଭ କରିଥିଲେ । ସେ ଚାହୁଁଥିଲେ ରାମକୃଷ୍ଣ ମଧ୍ୟ ତନ୍ତ୍ର ସାଧନା କରନ୍ତୁ । ସେ ତାଙ୍କୁ ପୁତ୍ର ପରି ସ୍ନେହ ଶ୍ରଦ୍ଧା କରୁଥିଲେ । ଦିନେ ତାଙ୍କୁ ସେ ତନ୍ତ୍ର ସାଧନାରେ ଦୀକ୍ଷିତ କରିବା ପାଇଁ ପ୍ରସ୍ତାବ ଦେଲେ । ରାମକୃଷ୍ଣ ଏକଥା ଶୁଣି କହିଲେ - "ମୁଁ ମାଆ ଜଗଦମ୍ବାଙ୍କୁ ପଚାରେ । ସେ ଯଦି କହିବେ ମୁଁ ତନ୍ତ୍ର ସାଧନା ଶିଖିବି ।"

ଏହାପରେ ରାମକୃଷ୍ଣ ମାଆ କାଳୀଙ୍କ ଆଶୀର୍ବାଦ ଭିକ୍ଷା କରିଥିଲେ । ତନ୍ତ୍ର ସାଧନା ଶିକ୍ଷା କରିବା ପାଇଁ ତାଙ୍କର ନିର୍ଦ୍ଦେଶ ପାଇଥିଲେ । ମାଆଙ୍କ ଆଦେଶାନୁସାରେ ସେ ଭୈରବୀଙ୍କଠାରୁ ଆଗ୍ରହରେ ତନ୍ତ୍ରସାଧନା ଶିକ୍ଷା କରିଥିଲେ । ଭୈରବୀ ତାଙ୍କୁ ବହୁ ପ୍ରକାର ପୂଜା, ହୋମ - ତର୍ପଣ ଓ ଜପ-ତପ ବିଷୟରେ ଶିକ୍ଷା ପ୍ରଦାନ କଲେ । ଜଟିଳ ତନ୍ତ୍ର ସାଧନାରେ ଦୀକ୍ଷିତ କରି ଚଉଷଠୀ ତନ୍ତ୍ର ଶାସ୍ତ୍ରରେ ଯେତେ ପ୍ରକାର ସାଧନା ଅଛି, ସେ ସବୁ ଶିକ୍ଷା ଦେଲେ । ରାମକୃଷ୍ଣ ଗୋଟିଏ ଗୋଟିଏ ସାଧନା ଦୁଇ ତିନି ଦିନ ମଧ୍ୟରେ ଆୟତ୍ତ କରି ନେଉଥାଆନ୍ତି ।

ଏହିପରି ସେ ଚଉଷଠୀ ତନ୍ତ୍ର ଶାସ୍ତ୍ରରେ ସିଦ୍ଧି ଲାଭ କରି ଏହି କଠୋର ସାଧନାରେ ସଫଳତା ପାଇଥିଲେ ।

ରାମକୃଷ୍ଣ ତାନ୍ତ୍ରିକ ସାଧନାରେ ଅଷ୍ଟ ସିଦ୍ଧି ଲାଭ କରିଥିବା କଥା ଚାରିଆଡ଼େ ପ୍ରଚାରିତ ହୋଇଗଲା । ତାଙ୍କୁ ଦେଖିବା ପାଇଁ ପ୍ରତିଦିନ ଦକ୍ଷିଣେଶ୍ୱରକୁ ଦେଶର ବିଭିନ୍ନ ସ୍ଥାନରୁ ଭକ୍ତମାନେ ଆସିଲେ । ସାଧୁ, ସନ୍ଥ, ପଣ୍ଡିତ ଓ ବିଭିନ୍ନ ସଂପ୍ରଦାୟର ଲୋକ ତାଙ୍କ ଧର୍ମାଲୋଚନା ଶୁଣିବା ପାଇଁ ଭାରତର ଦୂରଦୂରାନ୍ତରୁ ଦକ୍ଷିଣେଶ୍ୱରକୁ ଆସୁଥିଲେ । ଦକ୍ଷିଣେଶ୍ୱର ଏକ ତୀର୍ଥ କ୍ଷେତ୍ର ହୋଇଗଲା । ରାମକୃଷ୍ଣ ସବୁ ସଂପ୍ରଦାୟର ଲୋକଙ୍କୁ ସମାନ ଦୃଷ୍ଟିରେ ଦେଖୁଥିଲେ ଓ ଆଦର କରୁଥିଲେ । ତାଙ୍କର ନିଷ୍ଠା ଓ ଭକ୍ତି ଦେଖି ଆଗନ୍ତୁକମାନେ ଆନନ୍ଦ ଲାଭ କରୁଥିଲେ । କେହି କେହି ତାଙ୍କର ଶିଷ୍ୟତ୍ୱ ମଧ୍ୟ ଗ୍ରହଣ କରିଥିଲେ ।

ଦିନେ ଦକ୍ଷିଣେଶ୍ୱରକୁ ତୋତାପୁରୀ ନାମରେ ଜଣେ ସନ୍ନ୍ୟାସୀ ଆସିଲେ । ସେ ଥିଲେ ଜଣେ ସଂସାର ତ୍ୟାଗୀ ସାଧକ । ଚାଳିଶ ବର୍ଷ କାଳ କଠୋର ସାଧନା କରି ସେ ନିର୍ବିକଳ୍ପ ସମାଧି ଲାଭ କରିଥିଲେ ଓ ବ୍ରହ୍ମଙ୍କୁ ଦର୍ଶନ କରିପାରିଥିଲେ । ଏହାଦ୍ୱାରା ଜଣେ ପରମ ଦାର୍ଶନିକ ଓ ପ୍ରସିଦ୍ଧ ସନ୍ନ୍ୟାସୀ ଭାବରେ ସେ ଚାରିଆଡ଼େ ପରିଚିତ ହୋଇଥିଲେ ।

ତୋତାପୁରୀ ବ୍ରହ୍ମଜ୍ଞ ହେବା ପରେ ସାରା ଭାରତ ଭ୍ରମଣରେ ବାହାରିଥିଲେ । ବହୁ ତୀର୍ଥ ଭ୍ରମଣ କରି ସେ ଦକ୍ଷିଣେଶ୍ୱରରେ ଆସି ପହଞ୍ଚିଥିଲେ । ସେ ଯେଉଁ ସ୍ଥାନକୁ ଭ୍ରମଣରେ ଯାଉଥାନ୍ତି, ସେଠାରେ ତିନି ଦିନରୁ ଅଧିକ ଦିନ ରହୁ ନଥାନ୍ତି । ଦକ୍ଷିଣେଶ୍ୱରର କାଳୀ ମନ୍ଦିରରେ ମଧ ତିନି ଦିନ ରହିବେ ବୋଲି ସ୍ଥିର କରିଥିଲେ ।

ତୋତାପୁରୀ ଦକ୍ଷିଣେଶ୍ୱରରେ ପହଞ୍ଚିଲା ବେଳକୁ ରାମକୃଷ୍ଣଙ୍କ ଯଶ ଓ ଖ୍ୟାତି ଚାରିଆଡ଼େ ପ୍ରଚାରିତ ହୋଇ ସାରିଥାଏ । ତୋତାପୁରୀ କାଳୀମନ୍ଦିରରେ ପହଞ୍ଚି ପ୍ରଥମେ ଦେଖିଲେ ରାମକୃଷ୍ଣଙ୍କୁ । ରାମକୃଷ୍ଣ ସେତେବେଳେ ଧ୍ୟାନମଗ୍ନ ହୋଇଥିଲେ । ଧ୍ୟାନ ଭାଙ୍ଗିବା ପରେ ସମୀପରେ ଜଣେ ନାଗା ସନ୍ନ୍ୟାସୀଙ୍କୁ ଦେଖି ରାମକୃଷ୍ଣ କହିଥିଲେ - ଈଶ୍ୱରଙ୍କୁ କାଳୀ, ରାମ ଓ କୃଷ୍ଣ ରୂପରେ ମୁଁ ଅନୁଭବ କରିପାରୁଛି । ଏକଥା ଶୁଣି ତୋତାପୁରୀ ଆନନ୍ଦିତ ହୋଇଥିଲେ । ତାଙ୍କର ମନେ ହୋଇଥିଲା- ଏ ହିଁ ପ୍ରକୃତ ସାଧକ, ଯିଏ ଅଦ୍ୱୈତ ସାଧନା ପାଇଁ ପୂରାପୂରି ଉପଯୁକ୍ତ । ଏହାପରେ ସେ ରାମକୃଷ୍ଣଙ୍କୁ ବେଦାନ୍ତ ସାଧନା କରିବେ କି ବୋଲି ପ୍ରଶ୍ନ କରିଥିଲେ ।

ଏ ପ୍ରଶ୍ନ ଶୁଣି ରାମକୃଷ୍ଣ ସହଜ ସରଳ ଭାବରେ କହିଥିଲେ - ମୁଁ ମାଆଙ୍କୁ ପଚାରେ । ସେ ଯଦି ଆଦେଶ ଦେବେ,  ତାହାହେଲେ ଯାଇ ମୁଁ ବେଦାନ୍ତ ଶିକ୍ଷା କରିବି । ଏହାପରେ ରାମକୃଷ୍ଣ ମାଆ କାଳୀଙ୍କର ଅନୁମତି ନେଇ ସନ୍ନ୍ୟାସୀ ତୋତାପୁରୀଙ୍କ ନିକଟକୁ ଆସି ବେଦାନ୍ତ ଶିକ୍ଷା କରିବା ପାଇଁ କହିଥିଲେ ।

ରାମକୃଷ୍ଣ  ଯେ ସ୍ୱୟଂ ଜଗଦମ୍ବାଙ୍କଠାରୁ ଆଦେଶ ନେଇ ଆସିଲେ, ଏହା ଜାଣିବାରେ ତାଙ୍କର ଆଉ ସନ୍ଦେହ ରହି ନଥିଲା । ଏହି ଅଲୌକିକ ଶକ୍ତିର ପରିଚୟ ପାଇ ସେ ଅତି ଖୁସି ହୋଇଥିଲେ । ଏହାପରେ ଶାସ୍ତ୍ରବିଧି ଅନୁସାରେ ରାମକୃଷ୍ଣଙ୍କୁ ସେ ସନ୍ନ୍ୟାସ ଦୀକ୍ଷା ଦେଇଥିଲେ । ଉଭୟେ ଗୁରୁ ଓ ଶିଷ୍ୟ ପଞ୍ଚବଟୀ ଉଦ୍ୟାନରେ ଏକ ହୋମକୁଣ୍ଡ ଆଗରେ ବସି ଶାସ୍ତ୍ରମତେ ମନ୍ତ୍ର ଉଚ୍ଚାରଣ କରିଥିଲେ । ସଂସାରର ସକଳ

ମାୟାମମତା, କାମନା, ବାସନା ଆଦିକୁ ତ୍ୟାଗ କରିବାର ଶପଥ କରିଥିଲେ । ଏପରି କି ସେ ନିଜର ଉପବୀତ ଅଗ୍ନିରେ ସମର୍ପିତ କରି ଗୁରୁଙ୍କ ପଦବନ୍ଦନା କରିଥିଲେ ଓ ଦୀକ୍ଷାଗ୍ରହଣ କରିଥିଲେ । ଏହାପରେ ଗୁରୁ ତୋତାପୁରୀ ଅଦ୍ୱୈତ ବେଦାନ୍ତ ସଂପର୍କରେ ଶିକ୍ଷାଦାନ ଆରମ୍ଭ କରିଥିଲେ ।

ତୋତାପୁରୀ ପ୍ରଥମେ ରାମକୃଷ୍ଣଙ୍କୁ ବୁଝାଇଥିଲେ - ବ୍ରହ୍ମ ହିଁ ଏକମାତ୍ର ସତ୍ୟ । ସେ ଦେଶ କାଳର ଅତୀତ । ତାଙ୍କ ବ୍ୟତୀତ ଅନ୍ୟ ସବୁ ଅସତ୍ୟ । ତେଣୁ ଯୋଗ ସାଧନାବେଳେ ଯୋଗୀର ନାମ ବା ରୂପ ଧାରଣାରୁ ମୁକ୍ତ ହେବା ଆବଶ୍ୟକ । କେବଳ ନିଜ ମଧ୍ୟରେ ଥିବା ଆତ୍ମତତ୍ତ୍ୱକୁ ଆବିଷ୍କାର କରିବା ଦରକାର । ତେବେ ଯାଇ ଅହଂଜ୍ଞାନ ବ୍ରହ୍ମ ଚେତନାରେ ଲୀନ ହେବ । ଏସବୁ କଥା କହିସାରିବା ପରେ ତୋତାପୁରୀ ରାମକୃଷ୍ଣଙ୍କୁ କହିଲେ - "ତୁମେ ମନକୁ ସମସ୍ତ ବିଷୟରୁ ଦୂରେଇ ଆଣି ବ୍ରହ୍ମଙ୍କ ଧ୍ୟାନରେ ନିମଗ୍ନ ହୋଇଯାଅ ।"

ରାମକୃଷ୍ଣ ଗୁରୁଙ୍କ ଆଦେଶାନୁସାରେ ମନକୁ ଏକନିଷ୍ଠ କରିବାକୁ ଲାଗିଲେ । ମାତ୍ର ଯେତେ ଚେଷ୍ଟା କଲେ ମଧ୍ୟ ମନକୁ ପୂରା ନିର୍ବିକଳ୍ପ କରିପାରିଲେ ନାହିଁ । କାରଣ ଏହା ଏତେ ସହଜ ନ ଥିଲା । ସେ ସଂସାରର ସକଳ ବିଷୟରୁ ମନକୁ ଦୂରେଇ ନେଇଥିଲେ ବି ନାମ ବା ରୂପରୁ ମନକୁ ସଂପୂର୍ଣ୍ଣ ମୁକ୍ତ କରିପାରୁ ନଥିଲେ । ବାରମ୍ବାର ତାଙ୍କ ମନରେ କରୁଣାମୟୀ ମାଆ ଜଗଦମ୍ବାଙ୍କ ମୂର୍ତ୍ତି ଚାଲିଆସୁଥିଲେ । ଏକଥା ସେ ଗୁରୁଙ୍କୁ ଜଣାଇଲେ ।

ତୋତାପୁରୀ ରାମକୃଷ୍ଣଙ୍କ କଥା ଶୁଣି ଭୀଷଣ ବିରକ୍ତ ହେଲେ । ସେହି କୁଟୀରରେ ପଡ଼ିଥିବା ଭଙ୍ଗା କାଚ ଖଣ୍ଡେ ସେ ଉଠାଇନେଲେ । ସେଇ କାଚ ଖଣ୍ଡକୁ ରାମକୃଷ୍ଣଙ୍କ ଆଖିର ଦୁଇ ଭ୍ରୂ ମଧ୍ୟରେ କପାଳର ଠିକ୍ ମଝି ଜାଗାରେ ଜୋର୍‌ରେ ଚାପିଦେଲେ । ଏହାପରେ ରାମକୃଷ୍ଣଙ୍କୁ ସେହି ବିନ୍ଦୁରେ ମନକୁ ଚାରିଆଡ଼ୁ ଟାଣି ଆଣି ନିବଦ୍ଧ କରିବାକୁ କହିଲେ । ରାମକୃଷ୍ଣ ପୁଣି ଥରେ ଏକ ଲୟରେ ଧ୍ୟାନରେ ମଗ୍ନ ହେଲେ । ଏଥର ମନକୁ ଜଗନ୍ମାତାଙ୍କଠାରୁ ଦୂରେଇ ଆଣି ଦୃଢ଼ ସଂକଳ୍ପ ନେଇ ସେ ଧ୍ୟାନରେ ବସିଲେ । ଆଉ କୌଣସି ବାଧା ରହିଲା ନାହିଁ । ମନ ତାଙ୍କର ସାକାର ଅତିକ୍ରମ କରି ଊର୍ଦ୍ଧ୍ୱକୁ ଉଠିଲା । ସେ ନିଜକୁ ସଂପୂର୍ଣ୍ଣ ରୂପେ ଭୁଲିଯାଇ ଗଭୀର ସମାଧିରେ ନିମଗ୍ନ ହୋଇଗଲେ ।



ତୋତାପୁରୀ ରାମକୃଷ୍ଣଙ୍କ ଏକ ନିଷ୍ଠ ସାଧନା ଦେଖି ସେହି କୁଟୀରରୁ ବାହାରକୁ ଚାଲିଆସିଲେ । ତାଙ୍କ ଧ୍ୟାନକୁ କେହି ଭାଙ୍ଗି ନ ଦେବା ପାଇଁ ସେ ବାହାରୁ କୁଟୀରରେ ତାଲା ପକାଇ ଦେଲେ । ନିଜେ ପଞ୍ଚବଟୀକୁ ଫେରି ଆସି ରାମକୃଷ୍ଣଙ୍କ ତପସ୍ୟା ଭାଙ୍ଗିବା ପର୍ଯ୍ୟନ୍ତ ତାଙ୍କୁ ଅପେକ୍ଷା କଲେ । ମନେ ମନେ ସେ ଭାବିଥିଲେ - ଯେ ପର୍ଯ୍ୟନ୍ତ ରାମକୃଷ୍ଣଙ୍କ ତପସ୍ୟା ନ ଭାଙ୍ଗିଛି ଓ ସେ କୁଟୀର ମଧ୍ୟରୁ କବାଟ ଖୋଲିବା ପାଇଁ ନ ଡାକିଛନ୍ତି, ସେ ପର୍ଯ୍ୟନ୍ତ ସେ କବାଟ ଖୋଲିବେ ନାହିଁ । ମାତ୍ର ଏ କ'ଣ ? ଏହା ମଧ୍ୟରେ ତିନି ଦିନ ଅତିବାହିତ ହୋଇଯାଇଥିଲେ ବି ରାମକୃଷ୍ଣଙ୍କର କବାଟ ଖୋଲିବା ପାଇଁ ଡାକରା ଆସୁ ନାହିଁ ।

ତୋତାପୁରୀ ବିବ୍ରତ ହୋଇ ଆସି କବାଟ ଫିଟାଇଲେ । ଶିଷ୍ୟ ଡାକିବା ପର୍ଯ୍ୟନ୍ତ ସେ ଆଉ ଅପେକ୍ଷା କରିପାରିଲେ ନାହିଁ । ମାତ୍ର କବାଟ ଖୋଲି ସେ ଆଶ୍ଚର୍ଯ୍ୟ ହୋଇଗଲେ । ତିନି ଦିନ ତଳେ ରାମକୃଷ୍ଣ ଯେପରି ସ୍ଥିର ନିଶ୍ଚଳ ହୋଇ ବସିଥିଲେ, ଠିକ୍ ସେମିତି ଧ୍ୟାନରେ ବସିଛନ୍ତି । ବାହାର ଜଗତ ସହିତ ତାଙ୍କର କୌଣସି ସଂପର୍କ ନାହିଁ । ଶିଷ୍ୟର ସାଧନା ଦେଖି ସେ ଖୁବ୍ ଖୁସି ହୋଇଥିଲେ । ମନେ ମନେ ଭାବିଲେ - ଚାଳିଶ ବର୍ଷ କଠୋର ସାଧନା କରି ଯେଉଁ ସମାଧିକୁ ସେ ଲାଭ କରିପାରିଥିଲେ, ରାମକୃଷ୍ଣ ମାତ୍ର ତିନି ଦିନରେ ତାକୁ ଆୟତ୍ତ କରିପାରିଛନ୍ତି । ଏହାପରେ ସେ ରାମକୃଷ୍ଣଙ୍କୁ ସଚେତନ କରାଇ ବାହ୍ୟ ଜଗତକୁ ଫେରାଇ ଆଣିବା ପାଇଁ ତାଙ୍କ କାନ ପାଖରେ 'ହରି ଓଁ' ମନ୍ତ୍ର ଉଚ୍ଚାରଣ କଲେ । ଧୀରେ ଧୀରେ ରାମକୃଷ୍ଣଙ୍କ ମନ ବାହ୍ୟ ଜଗତକୁ ଫେରି ଆସିଲା । ସେ ସାମନାରେ ଗୁରୁ ତୋତାପୁରୀଙ୍କୁ ଦେଖି ତାଙ୍କ ପଦ ବନ୍ଦନା କଲେ ।

ତୋତାପୁରୀ ରାମକୃଷ୍ଣଙ୍କ ସାଧନାରେ ସନ୍ତୁଷ୍ଟ ହୋଇ ଆଶୀର୍ବାଦ କରିଥିଲେ ଓ ରାମକୃଷ୍ଣଙ୍କ ପାଖରେ ଦୀର୍ଘ ଏଗାର ମାସ କାଳ ଅବସ୍ଥାନ କରିଥିଲେ ।

## ଏକ କାମ, ଅନେକ ନାମ

ତୋତାପୁରୀ ରାମକୃଷ୍ଣଙ୍କ ନିକଟରୁ ଚାଲିଯିବା ପରେ ରାମକୃଷ୍ଣଙ୍କର ସାଧନା ଆହୁରି ବଢ଼ିଯାଇଥିଲା । ଗୁରୁଙ୍କ ଉପଦେଶ ଅନୁସାରେ ସେ ଦୀର୍ଘ ଛଅ ମାସ କାଳ ବ୍ରହ୍ମ ବିଦ୍ୟା ସାଧନ କରିଥିଲେ । ଏହି ସମୟ ମଧ୍ୟରେ ସେ ନିଜ ଶୟନ କକ୍ଷରୁ ସବୁ ଦେବ ଦେବୀଙ୍କ ଫଟୋଚିତ୍ରକୁ କାଢ଼ି ଦେଇଥିଲେ । କେବଳ ପରଂବ୍ରହ୍ମଙ୍କ ଧ୍ୟାନରେ ସେ ସମାହିତ ହୋଇଥିଲେ ।

୧୮୬୬ ମସିହାରେ ରାମକୃଷ୍ଣ ବିଶ୍ୱର କଲ୍ୟାଣ ନିମନ୍ତେ ଧର୍ମପ୍ରଚାର ପାଇଁ ବିଶ୍ୱପିତାଙ୍କଠାରୁ ଆଦେଶ ପାଇଥିଲେ । ଏହାହିଁ ରାମକୃଷ୍ଣଙ୍କ ଜୀବନରେ ଏକ ବିଶିଷ୍ଟ ଘଟଣା । ତାଙ୍କର ଅସାଧାରଣ ଉପଲବ୍ଧି ଓ ସମାଧି ସମସ୍ତଙ୍କୁ ବିସ୍ମିତ କରୁଥିଲା । ଧର୍ମପ୍ରଚାର ନିମନ୍ତେ ବିଶ୍ୱପିତାଙ୍କ ଆଦେଶ ଓ ନିଜସ୍ୱ ସାଧନା ଉଭୟର ସମ୍ମିଶ୍ରଣ ରାମକୃଷ୍ଣଙ୍କ ଜୀବନରେ ହୋଇଥିଲା । ନର ସେବା ହିଁ ନାରାୟଣ ସେବା ବୋଲି ସେ କହୁଥିଲେ ।

ରାମକୃଷ୍ଣ ବିଭିନ୍ନ ଧର୍ମର ଲକ୍ଷ୍ୟକୁ ଜାଣିବା ପାଇଁ ଇସ୍‌ଲାମ୍, ଖ୍ରୀଷ୍ଟିୟାନ୍, ବୌଦ୍ଧ, ଜୈନ ଓ ଶିଖ୍ ପ୍ରଭୃତି ଧର୍ମର ନୀତି ଓ ଆଦର୍ଶକୁ ଗ୍ରହଣ କରିଥିଲେ । ଏହି ସବୁ ଧର୍ମରେ ସେ ଈଶ୍ୱରଙ୍କର ସାନ୍ନିଧ ଲାଭ କରିପାରିଥିଲେ । ଶେଷରେ ସେ କହିଥିଲେ, ବିଭିନ୍ନ ଧର୍ମର ନୀତି ଓ ଆଦର୍ଶ ଭିନ୍ନ ଭିନ୍ନ ହେଲେ ମଧ୍ୟ ଏହାର ଲକ୍ଷ୍ୟ ଗୋଟିଏ । କେବଳ ସାଧକର ନିଷ୍ଠା ଓ ଆନ୍ତରିକତା ଦରକାର । ତା' ହେଲେ ସେ

ତୋତାପୁରୀ ରାମକୃଷ୍ଣଙ୍କ ଏକ ନିଷ୍ଠ ସାଧନା ଦେଖି ସେହି କୁଟୀରରୁ ବାହାରକୁ ଚାଲିଆସିଲେ । ତାଙ୍କ ଧ୍ୟାନକୁ କେହି ଭାଙ୍ଗି ନ ଦେବା ପାଇଁ ସେ ବାହାରୁ କୁଟୀରରେ ତାଲା ପକାଇ ଦେଲେ । ନିଜେ ପଞ୍ଚବଟୀକୁ ଫେରି ଆସି ରାମକୃଷ୍ଣଙ୍କ ତପସ୍ୟା ଭାଙ୍ଗିବା ପର୍ଯ୍ୟନ୍ତ ତାଙ୍କୁ ଅପେକ୍ଷା କଲେ । ମନେ ମନେ ସେ ଭାବିଥିଲେ - ଯେ ପର୍ଯ୍ୟନ୍ତ ରାମକୃଷ୍ଣଙ୍କ ତପସ୍ୟା ନ ଭାଙ୍ଗିଛି ଓ ସେ କୁଟୀର ମଧ୍ୟରୁ କବାଟ ଖୋଲିବା ପାଇଁ ନ ଡାକିଛନ୍ତି, ସେ ପର୍ଯ୍ୟନ୍ତ ସେ କବାଟ ଖୋଲିବେ ନାହିଁ । ମାତ୍ର ଏ କ'ଣ ? ଏହା ମଧ୍ୟରେ ତିନି ଦିନ ଅତିବାହିତ ହୋଇଯାଇଥିଲେ ବି ରାମକୃଷ୍ଣଙ୍କର କବାଟ ଖୋଲିବା ପାଇଁ ଡାକରା ଆସୁ ନାହିଁ ।

ତୋତାପୁରୀ ବିବ୍ରତ ହୋଇ ଆସି କବାଟ ଫିଟାଇଲେ । ଶିଷ୍ୟ ଡାକିବା ପର୍ଯ୍ୟନ୍ତ ସେ ଆଉ ଅପେକ୍ଷା କରିପାରିଲେ ନାହିଁ । ମାତ୍ର କବାଟ ଖୋଲି ସେ ଆଶ୍ଚର୍ଯ୍ୟ ହୋଇଗଲେ । ତିନି ଦିନ ତଳେ ରାମକୃଷ୍ଣ ଯେପରି ସ୍ଥିର ନିଶ୍ଚଳ ହୋଇ ବସିଥିଲେ, ଠିକ୍ ସେମିତି ଧ୍ୟାନରେ ବସିଛନ୍ତି । ବାହାର ଜଗତ ସହିତ ତାଙ୍କର କୌଣସି ସଂପର୍କ ନାହିଁ । ଶିଷ୍ୟର ସାଧନା ଦେଖି ସେ ଖୁବ୍ ଖୁସି ହୋଇଥିଲେ । ମନେ ମନେ ଭାବିଲେ - ଚାଳିଶ ବର୍ଷ କଠୋର ସାଧନା କରି ଯେଉଁ ସମାଧିକୁ ସେ ଲାଭ କରିପାରିଥିଲେ, ରାମକୃଷ୍ଣ ମାତ୍ର ତିନି ଦିନରେ ତାକୁ ଆୟତ୍ତ କରିପାରିଛନ୍ତି । ଏହାପରେ ସେ ରାମକୃଷ୍ଣଙ୍କୁ ସଚେତନ କରାଇ ବାହ୍ୟ ଜଗତକୁ ଫେରାଇ ଆଣିବା ପାଇଁ ତାଙ୍କ କାନ ପାଖରେ 'ହରି ଓଁ' ମନ୍ତ୍ର ଉଚ୍ଚାରଣ କଲେ । ଧୀରେ ଧୀରେ ରାମକୃଷ୍ଣଙ୍କ ମନ ବାହ୍ୟ ଜଗତକୁ ଫେରି ଆସିଲା । ସେ ସାମନାରେ ଗୁରୁ ତୋତାପୁରୀଙ୍କୁ ଦେଖି ତାଙ୍କ ପଦ ବନ୍ଦନା କଲେ ।

ତୋତାପୁରୀ ରାମକୃଷ୍ଣଙ୍କ ସାଧନାରେ ସନ୍ତୁଷ୍ଟ ହୋଇ ଆଶୀର୍ବାଦ କରିଥିଲେ ଓ ରାମକୃଷ୍ଣଙ୍କ ପାଖରେ ଦୀର୍ଘ ଏଗାର ମାସ କାଳ ଅବସ୍ଥାନ କରିଥିଲେ ।

## ଏକ କାମ, ଅନେକ ନାମ

ତୋତାପୁରୀ ରାମକୃଷ୍ଣଙ୍କ ନିକଟରୁ ଚାଲିଯିବା ପରେ ରାମକୃଷ୍ଣଙ୍କର ସାଧନା ଆହୁରି ବଢ଼ିଯାଇଥିଲା । ଗୁରୁଙ୍କ ଉପଦେଶ ଅନୁସାରେ ସେ ଦୀର୍ଘ ଛଅ ମାସ କାଳ ବ୍ରହ୍ମ ବିଦ୍ୟା ସାଧନ କରିଥିଲେ । ଏହି ସମୟ ମଧ୍ୟରେ ସେ ନିଜ ଶୟନ କକ୍ଷରୁ ସବୁ ଦେବ ଦେବୀଙ୍କ ଫଟୋଚିତ୍ରକୁ କାଢ଼ି ଦେଇଥିଲେ । କେବଳ ପରଂବ୍ରହ୍ମଙ୍କ ଧ୍ୟାନରେ ସେ ସମାହିତ ହୋଇଥିଲେ ।

୧୮୬୬ ମସିହାରେ ରାମକୃଷ୍ଣ ବିଶ୍ୱର କଲ୍ୟାଣ ନିମନ୍ତେ ଧର୍ମପ୍ରଚାର ପାଇଁ ବିଶ୍ୱପିତାଙ୍କଠାରୁ ଆଦେଶ ପାଇଥିଲେ । ଏହାହିଁ ରାମକୃଷ୍ଣଙ୍କ ଜୀବନରେ ଏକ ବିଶିଷ୍ଟ ଘଟଣା । ତାଙ୍କର ଅସାଧାରଣ ଉପଲବ୍ଧି ଓ ସମାଧି ସମସ୍ତଙ୍କୁ ବିସ୍ମିତ କରୁଥିଲା । ଧର୍ମପ୍ରଚାର ନିମନ୍ତେ ବିଶ୍ୱପିତାଙ୍କ ଆଦେଶ ଓ ନିଜସ୍ୱ ସାଧନା ଉଭୟର ସମ୍ମିଶ୍ରଣ ରାମକୃଷ୍ଣଙ୍କ ଜୀବନରେ ହୋଇଥିଲା । ନର ସେବା ହିଁ ନାରାୟଣ ସେବା ବୋଲି ସେ କହୁଥିଲେ ।

ରାମକୃଷ୍ଣ ବିଭିନ୍ନ ଧର୍ମର ଲକ୍ଷ୍ୟକୁ ଜାଣିବା ପାଇଁ ଇସ୍‌ଲାମ୍, ଖ୍ରୀଷ୍ଟିୟାନ୍, ବୌଦ୍ଧ, ଜୈନ ଓ ଶିଖ୍ ପ୍ରଭୃତି ଧର୍ମର ନୀତି ଓ ଆଦର୍ଶକୁ ଗ୍ରହଣ କରିଥିଲେ । ଏହି ସବୁ ଧର୍ମରେ ସେ ଈଶ୍ୱରଙ୍କର ସାନ୍ନିଧ ଲାଭ କରିପାରିଥିଲେ । ଶେଷରେ ସେ କହିଥିଲେ, ବିଭିନ୍ନ ଧର୍ମର ନୀତି ଓ ଆଦର୍ଶ ଭିନ୍ନ ଭିନ୍ନ ହେଲେ ମଧ୍ୟ ଏହାର ଲକ୍ଷ୍ୟ ଗୋଟିଏ । କେବଳ ସାଧକର ନିଷ୍ଠା ଓ ଆନ୍ତରିକତା ଦରକାର । ତା' ହେଲେ ସେ

ଯେକୌଣସି ପଥ ଦେଇ ଗଲେ ବି ନିଜର ଲକ୍ଷ୍ୟ ସ୍ଥଳରେ ପହଞ୍ଚି ପାରିବ ।

ସେ କହୁଥିଲେ-ପାଣିକୁ କେହି ଜଳ, କେହି ନୀର ଅବା କେହି ଇଂରାଜୀରେ ୱାଟର ବୋଲି କୁହନ୍ତି । ପାଣିର ଅନେକ ନାମ, କିନ୍ତୁ କାମ ଗୋଟିଏ । ସେ କାମଟି ହେଲା- ତୃଷିତ ଲୋକର ତୃଷା ନିବାରଣ କରିବା । ସେହିଭଳି ଈଶ୍ୱର ଏକ । କିନ୍ତୁ ହିନ୍ଦୁ, ମୁସଲମାନ, ବୌଦ୍ଧ, ଖ୍ରୀଷ୍ଟିୟାନମାନେ ତାଙ୍କୁ ଭିନ୍ନ ଭିନ୍ନ ଭାବରେ ପୂଜା କରନ୍ତି । ଏଣୁ ସବୁ ଧର୍ମର ମୂଳ ଏକ ।

## ରାମକୃଷ୍ଣ ପରମହଂସ ଓ ସାରଦା ଦେବୀ

୧୮୬୭ ମସିହାରେ ରାମକୃଷ୍ଣ ଆମାଶୟ ରୋଗରେ ପଡ଼ିଲେ । ଏହା ସହିତ କଠିନ ସାଧନା କରିବା ଯୋଗୁଁ ସେ ଅଧିକ ଦୁର୍ବଳ ହୋଇଗଲେ । ଫଳରେ ଦକ୍ଷିଣେଶ୍ୱର ଛାଡ଼ି କାମାରପୁକୁରକୁ କିଛି ଦିନ ବିଶ୍ରାମ ନେବା ପାଇଁ ସେ ଚାଲିଆସିଲେ । ଘରେ ତାଙ୍କୁ ଦେଖି ସମସ୍ତେ ଖୁସି ହେଲେ ମଧ ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିଥିବା ଦେଖି ଚିନ୍ତିତ ହୋଇପଡ଼ିଲେ । ଏଣୁ ଭଲ ଭାବରେ ଦେଖା ଶୁଣା ଓ ସେବା ଶୁଶ୍ରୂଷା କରିବା ପାଇଁ ତାଙ୍କ ପତ୍ନୀଙ୍କୁ ଡକାଇ ଆଣିବା ଉଚିତ ଭାବିଲେ । ସେତେବେଳକୁ ତାଙ୍କ ପତ୍ନୀ ସାରଦାଦେବୀଙ୍କର ବୟସ ହୋଇଥିଲା ଚଉଦ ବର୍ଷ । ସେ ତାଙ୍କ ବାପଘରେ ରହୁଥିଲେ । ରାମକୃଷ୍ଣଙ୍କ ଦେହ ଖରାପ ହୋଇଥିବା କଥା ସେ ଯେତେବେଳେ ଶୁଣିଲେ ସଙ୍ଗେ ସଙ୍ଗେ ଶଶୁର ଘରକୁ ଚାଲିଆସିଲେ । ମନ ପ୍ରାଣ ଦେଇ ସ୍ୱାମୀଙ୍କର ସେବା ଯତ୍ନ କଲେ । ତାଙ୍କର ସରଳ ଅମାୟିକ ବ୍ୟବହାର ଘରର ଅନ୍ୟମାନଙ୍କ ମନକୁ କିଣି ନେଇଥିଲା ।

ସାରଦାଦେବୀଙ୍କ ସେବା ଯତ୍ନରେ ରାମକୃଷ୍ଣ ଧୀରେ ଧୀରେ ଭଲ ହେଲେ । କିନ୍ତୁ ଉଭୟଙ୍କ ମଧ୍ୟରେ ସ୍ୱାମୀ ସ୍ତ୍ରୀର ସଂପର୍କ ନଥିଲା । ବରଂ ପତ୍ନୀଙ୍କ ସାନ୍ନିଧ୍ୟ ରାମକୃଷ୍ଣଙ୍କ ପାଇଁ ପରୀକ୍ଷାର ସମୟ ଥିଲା । କାରଣ ଗୁରୁ ତୋତାପୁରୀ ତାଙ୍କୁ କହିଥିଲେ - ଯେଉଁ ସାଧକ ଉଭୟ ସ୍ତ୍ରୀ ଓ ପୁରୁଷଙ୍କୁ ସମାନ ଭାବରେ ଦେଖେ, ସେ ହିଁ ପ୍ରକୃତରେ ବ୍ରହ୍ମଜ୍ଞାନୀ । ଏହି କଥାକୁ ମନେ ପକାଇ ସେ ସାରଦାଦେବୀଙ୍କୁ ନିଜ ମନର ସାଥି ଭାବରେ ଗ୍ରହଣ କରିଥିଲେ । ପତ୍ନୀଙ୍କ ସହିତ ସେ ଶାରୀରିକ ସଂପର୍କଠାରୁ ଦୂରରେ ଥିଲେ । ଏହା ସହିତ ପତ୍ନୀଙ୍କର କିପରି ଆଧ୍ୟାତ୍ମିକ କଲ୍ୟାଣ ହେବ, ସେଥିପାଇଁ ସେ ଉଦ୍ୟମ କରିଥିଲେ । କାମାରପୁକୁରରେ ଛଅ ସାତମାସ ରହିବା ପରେ ଦକ୍ଷିଣେଶ୍ୱର ଫେରିଯାଇଥିଲେ ।

ରାମକୃଷ୍ଣଙ୍କ ଆଦର୍ଶ ଜୀବନ ଯାପନ ପ୍ରତି ସାରଦାଦେବୀ ବେଶ୍ ଆକୃଷ୍ଟ ହୋଇପଡ଼ିଥିଲେ । ତାଙ୍କୁ ଯେତେବେଳେ ୧୮ ବର୍ଷ ହେଲା, ସେତେବେଳେ ସେ ସ୍ୱାମୀଙ୍କୁ ଦର୍ଶନ କରିବା ପାଇଁ ବ୍ୟଗ୍ର ହୋଇଉଠିଲେ । ଏହି ସମୟରେ ସେ ଜାଣିବାକୁ ପାଇଲେ ଯେ, ରାମକୃଷ୍ଣ ପୁଣି ପାଗଳ ହୋଇଯାଇଛନ୍ତି । ସବୁବେଳେ 'ହରି' 'ହରି' ହୋଇ ଚାରିଆଡ଼େ ବୁଲୁଛନ୍ତି । ଦେହରେ ଲୁଗା ସୁଦ୍ଧା ରଖୁନାହାନ୍ତି । ଏହି ସବୁ କଥା ଲୋକମାନଙ୍କଠାରୁ ଶୁଣି ସାରଦା ଦେବୀ ଦୁଃଖରେ ଭାଙ୍ଗି ପଡ଼ିଲେ । ସେ ଦକ୍ଷିଣେଶ୍ୱର ଯାଇ ଥରେ ସ୍ୱାମୀଙ୍କୁ ଦର୍ଶନ କରିବା ପାଇଁ ଇଚ୍ଛା କଲେ ।

ସେହି ସମୟରେ ସାରଦାଦେବୀଙ୍କ ସମବୟସୀ କେତେକ ସ୍ତ୍ରୀଲୋକ ଦୋଳ ପୂର୍ଣ୍ଣିମାରେ ଗଙ୍ଗାସ୍ନାନ ନିମନ୍ତେ କଲିକତା ବାହାରି

ଥାଅନ୍ତି । ସାରଦାଦେବୀ ସେମାନଙ୍କ ସହିତ ଦକ୍ଷିଣେଶ୍ୱର ଯାଇ ସ୍ୱାମୀଙ୍କୁ ଦେଖା କରିବା ପାଇଁ ଚାହିଲେ । ସାରଦାଦେବୀଙ୍କ ପିତା ଝିଅର ଦୁଃଖ ସହି ନ ପାରି ତାଙ୍କୁ କଲିକତା ନେଇଯିବା ପାଇଁ ବାହାରିଲେ । ସେତେବେଳେ ପୁଣି ଯାନ ବାହନର ସୁବିଧା ନଥିଲା । ଲୋକମାନେ ପାଦରେ ଚାଲି ଚାଲି ଯିବା ଆସିବା କରୁଥିଲେ । ସାରଦାଦେବୀ ମଧ୍ୟ ପିତାଙ୍କ ସହିତ ଦକ୍ଷିଣେଶ୍ୱର ଚାଲିଚାଲି ଯାଇଥିଲେ ଓ ରାମକୃଷ୍ଣଙ୍କ ନିକଟରେ ପହଞ୍ଚିଥିଲେ । ସେଠାରେ ରାମକୃଷ୍ଣଙ୍କୁ ପୂର୍ବ ପରି ଆଧ୍ୟାତ୍ମିକ ଭାବ ବିହ୍ୱଳରେ ରହୁଥିବା ଦେଖି ସେ ଆନନ୍ଦିତ ହୋଇଥିଲେ । ସେ ଯେ ପାଗଳ ହୋଇ ନାହାନ୍ତି ଜାଣି ସାରଦାଦେବୀଙ୍କ ପିତା ଝିଅକୁ ସେଠାରେ ଛାଡ଼ିଦେଇ ଫେରି ଆସିଥିଲେ । ସାରଦାଦେବୀ ଶାଶୂଙ୍କ ନିକଟରେ ନହବତ ଘରେ ଯାଇ ରହିଥିଲେ । ସ୍ୱାମୀ ଓ ଶାଶୂଙ୍କ ସେବା କରିଥିଲେ ।



ରାମକୃଷ୍ଣ ସାରଦାଦେବୀଙ୍କୁ ପାଖରେ ପାଇ ବି ନିଜ ସାଧନାରେ ଅଟଳ ରହିଥିଲେ । ତାଙ୍କୁ ଆଧ୍ୟାତ୍ମିକ ଚେତନା ସଂପର୍କରେ ବିଭିନ୍ନ ପ୍ରକାର ଶିକ୍ଷା ପ୍ରଦାନ କରିଥିଲେ । ସାରଦା ଦେବୀ ମଧ୍ୟ ବ୍ରହ୍ମଜ୍ଞାନୀ ସ୍ୱାମୀଙ୍କର ପଦାଙ୍କ ଅନୁସରଣ କରିଥିଲେ । ଦୈହିକ ସୁଖ ତାଙ୍କ ପାଇଁ ଅର୍ଥହୀନ ମନେ ହୋଇଥିଲା । ଧୀରେ ଧୀରେ ସେ ବି ଦିବ୍ୟ ଚେତନାରେ ଆନନ୍ଦ ଲାଭ କରିଥିଲେ ।

ଦିନେ ସାରଦା ଦେବୀ ସ୍ୱାମୀଙ୍କ ପଦ ସେବା କରୁ କରୁ ପ୍ରଶ୍ନ କରିଥିଲେ - " ଆପଣ ମୋତେ କେଉଁ ଭାବରେ ଦେଖନ୍ତି ?"

ରାମକୃଷ୍ଣ ଉତ୍ତରରେ କହିଥିଲେ - "ମୁଁ ତୁମକୁ ଆନନ୍ଦମୟୀ ମାଆ ଭାବରେ ହିଁ ଦେଖେ । ଯେଉଁ ମାଆ ମନ୍ଦିରରେ ଅଛନ୍ତି, ସେହି ମାଆ ମୋର ଏ ଶରୀରକୁ ଜନ୍ମ ଦେଇଛନ୍ତି । ସେହି ମାଆ ଏବେ ନହବତ ଘରେ ଅଛନ୍ତି । ଆଉ ମୋର ପଦ ସେବା ମଧ୍ୟ କରୁଛନ୍ତି । ମୁଁ ତୁମକୁ ସର୍ବତ୍ର ଦେଖୁଛି ।"

ଏହାପରେ ୧୮୭୨ ମସିହାରେ ଏକ କାଳୀ ପୂଜାରେ ସାରଦା ଦେବୀଙ୍କୁ ଦେବୀ ରୂପେ ବସାଇ ରାମକୃଷ୍ଣ ତାଙ୍କର ପୂଜା କରିଥିଲେ । ସାରଦାଦେବୀ ମଧ୍ୟ ସ୍ୱାମୀଙ୍କ ନିର୍ଦ୍ଦେଶରେ ଦେବୀଙ୍କ ପାଇଁ ପ୍ରସ୍ତୁତ ଆସନରେ ବସିଥିଲେ । ବିଧି ଅନୁସାରେ ରାମକୃଷ୍ଣ ସାରଦାଦେବୀଙ୍କୁ ଷୋଡ଼ଶ ଉପଚାରରେ ପୂଜା ଅର୍ଚ୍ଚନା କରିଥିଲେ । ପୂଜା ସମୟରେ ସାରଦା ଦେବୀ ଧ୍ୟାନରେ ନିଜକୁ ହଜାଇ ଦେଇଥିଲେ । ଧୀରେ ଧୀରେ ବାହ୍ୟ ଜଗତରୁ ଉଭୟେ ପତିପତ୍ନୀ ଦୂରେଇ ଯାଇ ଆଧ୍ୟାତ୍ମିକ ସାଧନାରେ ବୁଡ଼ିଯାଇଥିଲେ । ଏପରିକି ନିଜକୁ ପରଂବ୍ରହ୍ମଙ୍କ ସହିତ ମିଶାଇ ଦେଇଥିଲେ ।

ରାମକୃଷ୍ଣଙ୍କ ଭକ୍ତ ଓ ଶିଷ୍ୟମାନେ ସାରଦାଦେବୀଙ୍କୁ ଖୁବ୍ ଭକ୍ତି କରୁଥିଲେ । ସେମାନେ ତାଙ୍କୁ 'ମାତା ଠାକୁରାଣୀ' ବୋଲି କହୁଥିଲେ । ସାରଦାଦେବୀ ମଧ୍ଯ ସେମାନଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ ଓ ନାନା ପ୍ରକାର ପ୍ରେରଣା ଦେଉଥିଲେ । ରାମକୃଷ୍ଣଙ୍କ ପରେ ସେ ହିଁ ତାଙ୍କର ଆଦର୍ଶକୁ ପ୍ରଚାର ଓ ପ୍ରସାର କରିବା ଦିଗରେ ଚେଷ୍ଟା କରିଥିଲେ ।

## ପ୍ରିୟ ଶିଷ୍ୟ ବିବେକାନନ୍ଦ

ରାମକୃଷ୍ଣଙ୍କର ଅନେକ ଶିଷ୍ୟ ଥିଲେ । କିନ୍ତୁ ଅତି ପ୍ରିୟ ଶିଷ୍ୟ ଥିଲେ ନରେନ୍ଦ୍ର ନାଥ, ଯିଏ କି ପରେ ବିବେକାନନ୍ଦ ଭାବରେ ପରିଚିତ ହୋଇଥିଲେ । ନରେନ୍ଦ୍ର ନାଥ ପିଲାଦିନୁ ଜଣେ ଭଲ ଛାତ୍ର ଥିଲେ । ତାଙ୍କର ଥିଲା ବିଚକ୍ଷଣ ବୁଦ୍ଧି । ସବୁ ବିଷୟରେ ଜାଣିବାକୁ ତାଙ୍କର ଭାରି ଆଗ୍ରହ ଥିଲା । କିନ୍ତୁ କୌଣସି କଥାକୁ ବିନା ପ୍ରମାଣରେ ସେ ସତ ବୋଲି ମାନି ନେଉ ନଥିଲେ । ଏହା ବ୍ୟତୀତ ହିନ୍ଦୁ ଧର୍ମ ପ୍ରତି ତାଙ୍କର ପ୍ରଗାଢ଼ ବିଶ୍ୱାସ ଥିଲା । ସେ ପିଲାବେଳୁ ଅନେକ ସମୟରେ ଧ୍ୟାନ ମଗ୍ନ ହେଉଥିଲେ ।



ବଡ଼ ହେବା ପରେ ନରେନ୍ଦ୍ର ନାଥଙ୍କର ଆଧ୍ୟାତ୍ମିକ ସାଧନା ବଢ଼ି ଚାଲିଲା । କିନ୍ତୁ ଭଗବାନ ଅଛନ୍ତି କି ନାହାନ୍ତି, ଏ ବିଷୟରେ ତାଙ୍କ ମନରେ ସନ୍ଦେହ ଜାତ ହେଲା । ପୁଣି ସେ ଭାବିଲେ - ଯଦି ଭଗବାନ ଅଛନ୍ତି ତେବେ ତାଙ୍କୁ ଦର୍ଶନ କରିବା ସମ୍ଭବ କି ନୁହେଁ ? ଏହି ପ୍ରଶ୍ନର ସଠିକ୍ ଉତ୍ତର ପାଇବା ପାଇଁ ସେ ଚାରିଆଡ଼େ ଘୂରିବୁଲିଲେ ।

ଏହିପରି ଦିନେ ଆସି କେଶବଚନ୍ଦ୍ର ସେନ୍‌ଙ୍କ ଦ୍ୱାରା ପ୍ରତିଷ୍ଠିତ ବ୍ରାହ୍ମ ସମାଜରେ ନରେନ୍ଦ୍ର ନାଥ ଯୋଗ ଦେଲେ । ମହର୍ଷି ଦେବେନ୍ଦ୍ର ନାଥଙ୍କୁ ନିଜ ମନର ସନ୍ଦେହ ଦୂର କରିବା ପାଇଁ ସେହି ପ୍ରଶ୍ନ ପଚାରିଥିଲେ - "ମହାଶୟ ! ଆପଣ ଭଗବାନଙ୍କୁ ସ୍ୱଚକ୍ଷୁରେ ଦେଖିଛନ୍ତି ?"

ନରେନ୍ଦ୍ର ନାଥଙ୍କ ଏପରି ପ୍ରଶ୍ନରେ ମହର୍ଷି ଦେବେନ୍ଦ୍ର ନାଥ ଆଶ୍ଚର୍ଯ୍ୟ ହୋଇଗଲେ । ସେ କହିଲେ - "ମୁଁ ତାଙ୍କୁ ସ୍ୱଚକ୍ଷୁରେ ଦେଖି ନାହିଁ । କିନ୍ତୁ ଭଗବାନ ଅଛନ୍ତି । ତୁମେ ସାଧନା ବଳରେ ତାଙ୍କୁ ଦେଖିପାରିବ ।"

ଏହି ଉତ୍ତର ନରେନ୍ଦ୍ର ନାଥଙ୍କୁ ସନ୍ତୁଷ୍ଟ କରିପାରିଲା ନାହିଁ । ସେ ସେଠାରୁ ଫେରିଆସିଲେ । ଏହାପରେ ରାମକୃଷ୍ଣଙ୍କ ସାଧନା ଓ ମହିମା ସଂପର୍କରେ ଲୋକମାନଙ୍କଠାରୁ ଅନେକ କଥା ଶୁଣିବାକୁ ପାଇଲେ । ଦିନେ ସକାଳୁ ତାଙ୍କୁ ଭେଟିବା ପାଇଁ ଦକ୍ଷିଣେଶ୍ୱର ଯାତ୍ରା କଲେ । ସେ ସେଠାରେ ପହଞ୍ଚିଲାବେଳକୁ ରାମକୃଷ୍ଣ ଭକ୍ତମାନଙ୍କ ସହିତ ଧର୍ମ ଆଲୋଚନା କରୁଥିଲେ । ନରେନ୍ଦ୍ରନାଥ ସିଧା ରାମକୃଷ୍ଣଙ୍କ ପାଖରେ ପହଞ୍ଚି ପ୍ରଶ୍ନ କଲେ - "ମହାଶୟ ! ଆପଣ କ'ଣ ଭଗବାନଙ୍କୁ ଦେଖିଛନ୍ତି ?"

ରାମକୃଷ୍ଣ ନରେନ୍ଦ୍ର ନାଥଙ୍କ ମୁହଁକୁ ଚାହିଁଲେ । ଭଗବାନଙ୍କୁ ଦେଖିବା ପାଇଁ ତାଙ୍କ ବ୍ୟାକୁଳତା ଓ ମର୍ମ ବେଦନା ସେ ନିଜେ ଅନୁଭବ କରିପାରିଲେ । ଏହା ପରେ ସେ ଶାନ୍ତ ଭାବରେ କହିଲେ - "ହଁ, ମୁଁ ଭଗବାନଙ୍କୁ ଦେଖିଛି । ତୁମକୁ ଯେମିତି ଦେଖୁଛି, ଠିକ୍ ସେମିତି ତାଙ୍କୁ ଦେଖିଛି । ତୁମେ କ'ଣ ଭଗବାନଙ୍କୁ ଦେଖିବାକୁ ଚାହଁ ? ମୁଁ ତୁମକୁ ଦେଖାଇ ପାରିବି । ତେବେ ତୁମକୁ ମୋ କହିବାନୁସାରେ କାମ କରିବାକୁ ପଡ଼ିବ ।"

ରାମକୃଷ୍ଣଙ୍କ କଥା ନରେନ୍ଦ୍ରନାଥଙ୍କ ମନକୁ ସ୍ପର୍ଶ କରିଗଲା । ସେ ଖୁସି ହୋଇ ରାମକୃଷ୍ଣଙ୍କୁ ନିଜ ଗୁରୁ ଓ ପଥପ୍ରଦର୍ଶକ ଭାବେ ଗ୍ରହଣ କରିନେଲେ । ଏହାପରେ ନରେନ୍ଦ୍ର ନାଥଙ୍କ ଜୀବନର ଗତି ପଥ ବଦଳି ଯାଇଥିଲା । ରାମକୃଷ୍ଣ ତାଙ୍କୁ ଖୁବ୍ ଭଲ ପାଉଥିଲେ । ଦକ୍ଷିଣେଶ୍ୱର ଆସିବାରେ ତାଙ୍କର ଡେରି ହେଲେ ସେ ଅଧୀର ହୋଇ ପଡୁଥିଲେ । ତାଙ୍କୁ ନ ଦେଖିଲେ ଦଣ୍ଡେ ରହିପାରୁ ନଥିଲେ । ଆଉ ଦେଖିଲାମାତ୍ରେ ଦିବ୍ୟ ଭାବନାରେ ଉଦ୍‌ବେଳିତ ହୋଇ ପଡୁଥିଲେ । ସେ ଜାଣିଥିଲେ - ନରେନ୍ଦ୍ର ନାଥଙ୍କ ନିକଟରେ ଅସୀମ ସାହସ, ତ୍ୟାଗ, ପ୍ରଚୁର ଜ୍ଞାନ ଓ ପ୍ରଗାଢ଼ ଆଧ୍ୟାତ୍ମିକ ଶକ୍ତି ରହିଛି । ଏହାରି ବଳରେ ହିଁ ସେ ବିଶ୍ୱର ଅଶେଷ କଲ୍ୟାଣ ସାଧନ କରିପାରିବେ ।

ରାମକୃଷ୍ଣଙ୍କ ସାନ୍ନିଧ ଲାଭ କରି ନରେନ୍ଦ୍ରନାଥ ଆଧ୍ୟାତ୍ମିକ ସାଧନାରେ ଅଗ୍ରସର ହେଲେ । ରାମକୃଷ୍ଣ ଦିନେ ନରେନ୍ଦ୍ରନାଥଙ୍କୁ ଚାହିଁ ଚାହିଁ ତାଙ୍କ ଡାହାଣ ଗୋଡ଼କୁ ନରେନ୍ଦ୍ରନାଥଙ୍କ କାନ୍ଧ ଉପରେ ଥୋଇଦେଲେ । ଏହାପରେ ନରେନ୍ଦ୍ର ନାଥଙ୍କଠାରେ ଭାବାନ୍ତର ଦେଖା

ଦେଲା । ସେ ଅନୁଭବ କଲେ - ସକଳ ବସ୍ତୁ ଯେପରି ଅନନ୍ତ ସତ୍ତାରେ ଲୀନ ହୋଇଯାଉଛି । ସେ ମଧ୍ୟ ସେଥିରେ ଲୀନ ହୋଇ ଯାଉଛନ୍ତି । ଏହାପରେ ସେ ଭୟରେ ପାଟିକରି ଉଠିଲେ - ଆପଣ ଏ କ'ଣ କରୁଛନ୍ତି ?

ରାମକୃଷ୍ଣ ନରେନ୍ଦ୍ର ନାଥଙ୍କ ଛାତିକୁ ଆଉଁସି ଦେଲେ । ସେ ଧୀରେ ଧୀରେ ବାହ୍ୟ ଜଗତକୁ ଫେରିଆସିଲେ । ଏହିପରି ବହୁବାର ରାମକୃଷ୍ଣଙ୍କ କରୁଣା ଲାଭ କରି ନରେନ୍ଦ୍ରନାଥ ଆଧ୍ୟାତ୍ମିକ ସାଧନାରେ ସିଦ୍ଧି ଲାଭ କରିଥିଲେ ।

ରାମକୃଷ୍ଣ ବାରମ୍ବାର ସମାଧିସ୍ଥ ହେବା ଓ ଶରୀର ପ୍ରତି ଅବହେଳା କରିବା ଯୋଗୁଁ ଅସୁସ୍ଥ ହୋଇ ପଡ଼ିଲେ । ଡାକ୍ତରମାନେ ତାଙ୍କୁ ପରୀକ୍ଷା କରି କହିଲେ, ସେ ଗଳା କର୍କଟ ରୋଗରେ ଆକ୍ରାନ୍ତ ହୋଇଛନ୍ତି । ତେଣୁ ବେଶି କଥାବାର୍ତ୍ତା କରିବେ ନାହିଁ କି ଭାବାବିଷ୍ଟ ହେବେ ନାହିଁ । କିନ୍ତୁ ରାମକୃଷ୍ଣ ନିଜ ଯନ୍ତ୍ରଣା ଅପେକ୍ଷା ଭକ୍ତମାନଙ୍କ ଦୁଃଖକୁ ସହିପାରୁ ନଥିଲେ । ତେଣୁ ସେ ଡାକ୍ତରଙ୍କ ପରାମର୍ଶକୁ ଭୁଲି ଭକ୍ତମାନଙ୍କୁ ଉପଦେଶ ଦେଉଥିଲେ ।

କ୍ରମେ କ୍ରମେ ରାମକୃଷ୍ଣଙ୍କ ଅସୁସ୍ଥତା ବଢ଼ିବାକୁ ଲାଗିଲା । ସେ ଜାଣିପାରିଲେ ଯେ, ଆଉ ବେଶି ଦିନ ବଞ୍ଚିବେ ନାହିଁ । ସେ ତାଙ୍କର ପ୍ରିୟ ଶିଷ୍ୟ ନରେନ୍ଦ୍ର ନାଥଙ୍କୁ କହିଲେ- "ମୁଁ ଆଉ ବେଶି ଦିନ ବଞ୍ଚିବି ନାହିଁ । ମୋର ଶେଷ ସମୟ ପାଖେଇ ଆସିଲା । ମୋର ଏହି ପିଲାମାନଙ୍କୁ ତୁମ ଦାୟିତ୍ୱରେ ଛାଡ଼ି ଯାଉଛି । ତୁମେ ହେଉଛ ସମସ୍ତଙ୍କ

ଭିତରେ ବୁଦ୍ଧିମାନ ଓ ସାହସୀ । ତୁମେ ସେମାନଙ୍କୁ ସତ୍ ପଥରେ ପରିଚାଳିତ କରିବ ।"

ଏହାପରେ ରାମକୃଷ୍ଣ ତାଙ୍କୁ ସ୍ପର୍ଶ କରି ଅପଲକ ଦୃଷ୍ଟିରେ ଚାହିଁ ରହିଲେ ଓ ସମାଧିସ୍ଥ ହୋଇଗଲେ । ସେତେବେଳେ ତାଙ୍କ ପାଖରେ ଆଉ କେହି ନଥିଲେ । ନରେନ୍ଦ୍ର ନାଥ ଅନୁଭବ କଲେ, ସତେ ଯେପରି ଏକ ବିଦ୍ୟୁତ୍ ପ୍ରବାହ ତାଙ୍କ ଶରୀର ମଧ୍ୟକୁ ପ୍ରବେଶ କରୁଛି । ସେ ମଧ୍ୟ ବାହ୍ୟ ଜ୍ଞାନ ହରାଇ ବସିଲେ । ଏହାର କିଛି ସମୟ ପରେ ପ୍ରକୃତିସ୍ଥ ହୋଇ ସେ ଦେଖିଲେ - ରାମକୃଷ୍ଣଙ୍କ ଆଖିରେ ଅଶ୍ରୁ । ସେ ଏହାର କାରଣ ପଚାରିବାରୁ ରାମକୃଷ୍ଣ କହିଲେ - "ମୁଁ ମୋର ସବୁ ଶକ୍ତି ଆଜି ତୋତେ ଦାନ କରି ଫକିର ହୋଇଗଲି । ସେହି ଶକ୍ତି ବଳରେ ତୁ ଦୁନିଆରେ ଅଶେଷ ମଙ୍ଗଳକର କାର୍ଯ୍ୟ କରିପାରିବୁ । ସେ କାର୍ଯ୍ୟ ଶେଷ ହେଲେ ତୁ ସ୍ୱଧାମକୁ ଫେରିଯିବୁ ।" ଗୁରୁଙ୍କ ଆଶୀର୍ବାଦ ଲାଭ କରି ନରେନ୍ଦ୍ରନାଥ ମହାନ୍ ପୁରୁଷରେ ପରିଣତ ହୋଇଥିଲେ ।

ଏହାର ଦୁଇ ଦିନ ପରେ ନରେନ୍ଦ୍ରନାଥଙ୍କ ମନରେ ଗୁରୁଙ୍କୁ ପରୀକ୍ଷା କରିବା ପାଇଁ ଇଚ୍ଛା ହେଲା । ସେ ଭାବିଲେ - ରାମକୃଷ୍ଣ କ'ଣ ସତରେ ଭଗବାନଙ୍କ ଅବତାର ? ତାଙ୍କର ଏହି ଶାରୀରିକ କଷ୍ଟ ଭିତରେ ସେ ନିଜେ ଏକଥା ଯଦି ଦର୍ଶାଇ ପାରିବେ, ତେବେ ତାଙ୍କ ଅବତାରତ୍ୱରେ ମୋର ବିଶ୍ୱାସ ଜନ୍ମିବ ।

ରାମକୃଷ୍ଣ ନରେନ୍ଦ୍ରନାଥଙ୍କ ମନ କଥା ଜାଣିପାରିଲେ । ସେ ତାଙ୍କର ସନ୍ଦେହ ମୋଚନ ପାଇଁ ସଙ୍ଗେ ସଙ୍ଗେ କହିଲେ - "ଯିଏ ରାମ ଓ ଯିଏ କୃଷ୍ଣ, ସେ ହିଁ ବର୍ତ୍ତମାନ ରାମକୃଷ୍ଣ ।"

ରାମକୃଷ୍ଣ ଯେ କିପରି ତାଙ୍କ ଅନ୍ତରର କଥା ଜାଣିପାରିଲେ, ଏହା ନରେନ୍ଦ୍ର ନାଥଙ୍କୁ ଅବାକ୍ କରିଥିଲା । ସେ ଲଜ୍ଜା ଅନୁଭବ କରିଥିଲେ ।

୧୮୮୬ ମସିହା ଅଗଷ୍ଟ ମାସ ୧୬ ତାରିଖ ପ୍ରଭାତରେ ରାମକୃଷ୍ଣ ଚିରଦିନ ପାଇଁ ସଂସାରରୁ ବିଦାୟ ନେଇଥିଲେ । ମୃତ୍ୟୁ ପୂର୍ବରୁ ତିନି ଥର 'କାଳୀ', 'କାଳୀ', 'କାଳୀ' ବୋଲି ଉଚ୍ଚାରଣ କରିଥିଲେ । ଶିଷ୍ୟମାନେ ତାଙ୍କ ମରଶରୀରକୁ ଗୈରିକ ବସ୍ତ୍ରରେ ଆବୃତ୍ତ କରି କାଶୀପୁର ଶ୍ମଶାନରେ ଦାହ କରିଥିଲେ ।

ରାମକୃଷ୍ଣଙ୍କ ନଶ୍ୱର ଶରୀର ଶ୍ମଶାନରେ ଭସ୍ମୀଭୂତ ହୋଇଗଲା । ସେ ଜଗତରୁ ବିଦାୟ ନେଲେ ସତ ହେଲେ ସେ ଯେ ପରମ ସାଧକ । ତାଙ୍କ ଆତ୍ମା ଅବିନଶ୍ୱର । ସେ ଅମୃତ ପୁରୁଷ, ପରମହଂସ । ତାଙ୍କର ବାଣୀ, ତାଙ୍କର ତ୍ୟାଗ, ଆଦର୍ଶର ଦୀପଶିଖା ଅଗଣିତ ଭକ୍ତଙ୍କ ହୃଦୟରେ ପ୍ରଜ୍ୱଳିତ ହେଉଛି । ତାଙ୍କର ଆଦର୍ଶ ଅନୁସରଣ କରି ତାଙ୍କର ପ୍ରିୟ ଶିଷ୍ୟ ନରେନ୍ଦ୍ର ସାଧନାରେ ସିଦ୍ଧି ଲାଭ କରିଥିଲେ । ତାଙ୍କର ନୂତନ ନାମକରଣ ହୋଇଥିଲା - ସ୍ୱାମୀ ବିବେକାନନ୍ଦ । ଗୁରୁଙ୍କ ଅପୂର୍ଣ୍ଣ ଇଚ୍ଛାକୁ ପୂରଣ କରିବା ପାଇଁ ସେ ସ୍ଥାପନ କରିଥିଲେ ରାମକୃଷ୍ଣ ମଠ ଓ ରାମକୃଷ୍ଣ

ମିଶନ । ଶିକ୍ଷାର ପ୍ରସାର ଓ ସେବା କାର୍ଯ୍ୟରେ ମିଶନର ଅବଦାନ ଅବିସ୍ମରଣୀୟ ।

ପରମ ପୁରୁଷ ରାମକୃଷ୍ଣ ପରମହଂସଙ୍କ ଦେହାବସାନ ଘଟିଲା ସତ୍ୟ, କିନ୍ତୁ ମିଶନର କାର୍ଯ୍ୟ ଭିତରେ ସେ ଅମର ହୋଇ ରହିଛନ୍ତି ।

**ସହାୟକ ଗ୍ରନ୍ଥସୂଚୀ :**


(୧) ପରମ ପୁରୁଷ ଶ୍ରୀ ଶ୍ରୀ ରାମକୃଷ୍ଣ - ଅଚିନ୍ତ୍ୟ କୁମାର ସେନଗୁପ୍ତ, ଭାଷାନ୍ତର - ଗୌର ଗୋପାଳ ଜେନା

(୨) ମହାପୁରୁଷ ରାମକୃଷ୍ଣ ପରମ ହଂସ - ଶ୍ରୀ ଅପୂର୍ବ ରଂଜନ ରାୟ

(୩) ମହାପୁରୁଷ ଶ୍ରୀ ରାମକୃଷ୍ଣ ପରମହଂସ - ଶ୍ରୀ କୃଷ୍ଣଚନ୍ଦ୍ର ପାଲ

(୪) ମହାପୁରୁଷ ରାମକୃଷ୍ଣ ପରମହଂସ - ଅଧ୍ୟାପକ ସର୍ବେଶ୍ୱର ଦାସ ।


